# ସିଦ୍ଧାନ୍ତ

(ତିନୋଟି ନାଟକର ସଂକଳନ)

## ସିଦ୍ଧାନ୍ତ, ଉତ୍ତର ପୁରୁଷ, ସୁଅ


| | |
|---|---|
| ନାଟ୍ୟକାର | Play Wright |
| **ଶ୍ରୀ ଦିଲ୍ଲୀଶ୍ୱର ମହାରଣା** | **Sj. Dilliswar Moharana** |
| ପ୍ରକାଶିକା | Publisher |
| **ଶ୍ରୀମତୀ ଶୈଳବାଳା ମହାରଣା** | **Smt. Shailabala Moharana** |
| କ୍ଳାନ୍ତିହରା, ବଳରାମ ବିହାର | Klantihara, Balaram Vihar |
| ଢେଙ୍କାନାଳ-୭୫୯୦୦୧ | Dhenkanal-759001 |
| ଫୋନ : ୦୬୭୬୨-୨୨୬୨୦୪ | |
| ପ୍ରଥମ ପ୍ରକାଶ | First Publication |
| ଜୁଲାଇ, ୨୦୦୭ | July, 2007 |
| ପ୍ରଚ୍ଛଦ : | Cover : |
| ଶ୍ରୀ ବିଜୟ ସ୍ୱାଇଁ | Sri Bijaya Swain |
| ମୁଦ୍ରଣ : | Printed at : |
| ଚନ୍ଦ୍ର ଶେଖର ପ୍ରେସ୍ | Chandra Sekhar Press |
| କୁଞ୍ଜକାନ୍ତ, ଢେଙ୍କାନାଳ | Kunjakanta, Dhenkanal |
| ପ୍ରାପ୍ତିସ୍ଥାନ : | Available at : |
| ବାବାଜି ପାତ୍ର ବୁକ୍ ଷ୍ଟୋର ଏବଂ | Babaji Patra Book Store,& |
| ଲେଙ୍କା ବୁକ୍ ଷ୍ଟୋର, | Lenka Book Store, |
| ମହାରଣା ବୁକ୍ ଷ୍ଟୋର, ଢେଙ୍କାନାଳ | Moharana Book Store, Dhenkanal |
| ମୂଲ୍ୟ : ୮୫ ଟଙ୍କା | Price - **Rs. 85/-** |

ଓଡିଆ ନାଟ୍ୟ ଆନ୍ଦୋଳନକୁ ବଞ୍ଚାଇ ରଖିବା ପାଇଁ
ଯେଉଁମାନେ ନିଷ୍ଠାର ସହ ଉଦ୍ୟମକାରି ରଖିଛନ୍ତି
ସେଇମାନଙ୍କ ହାତରେ ଏଇ ସଂକଳନଟି ......

# ନିରବ ସଂଳାପ

ଏଇ ସଂକଳନଟିରେ ଅନ୍ତର୍ଭୁକ୍ତ ନାଟକ ଗୁଡିକୁ ମିଶାଇ ଏ ପର୍ଯ୍ୟନ୍ତ ମୋର ଚଉଦ ଗୋଟି ନାଟକ ପ୍ରକାଶ ପାଇଲା । ଏଥିରେ ସନ୍ନିବିଷ୍ଟ ତିନୋଟିଯାକ ନାଟକ ହାସ୍ୟବିରାମଯୁକ୍ତ ସିରିଓ କମିକ ଶ୍ରେଣୀର । ଅନେକ ଦାର ମଂଚସ୍ଥ ହେଲାପରେ ନାଟକ ଗୁଡିକୁ ପରିଶୋଧନ ଓ କିଛି କିଛି ସଂକ୍ଷିପ୍ତିକରଣ କରାଯାଇ ଅଧିକ ମଂଚ ଉପଯୋଗୀ କରାଯାଇଛି ।

ଅନେକ ସମୟରେ ନାଟ୍ୟ ସମାଲୋଚକ ମାନେ ନାଟ୍ୟ ସମୀକ୍ଷା କଲାବେଳେ କୌଣସି କୌଣସି ନାଟକର ବାର୍ତ୍ତା ବଡ ଦୁଃର୍ବଳ ବୋଲି ଅଭିଯୋଗ କରନ୍ତି । ଏମିତି ବି ଦେଖାଯାଏ ନାଟକ ଭିତରେ ଗୋଟିଏ ଭଲ ମେସେଜ୍ ଦେବାପାଇଁ ଅଧିକମାତ୍ରାରେ ଧ୍ୟାନ ଦେବା ଯୋଗୁଁ ନାଟକରେ ଉଚିତ୍ ମାତ୍ରାରେ ମନୋରଂଜନ ନରହି ରସହୀନ ହୋଇଯାଇଥାଏ । ଫଳରେ ଦର୍ଶକ ନାଟକ ଦେଖିବାକୁ ଆସି ନିରାଶ ହୋଇଫେରେ । ନାଟକ ଦେଖିବାକୁ ଆସୁଥିବା କୌଣସି ଦର୍ଶକ ନାଟ୍ୟ ମଂଚରୁ ନୀତିଶିକ୍ଷା ଗ୍ରହଣ କରିବା ମାନସିକତା ନେଇ ଆସିନଥାଏ । କର୍ମକ୍ଲାନ୍ତ ଜୀବନରୁ ନିଜକୁ ମୁକ୍ତକରି କିଛି ସମୟ ପାଇଁ ଆମୋଦିତ ହେବା ଆଶାରେ ସେ ନାଟକ ଦେଖିବାକୁ ଆସିଥାଏ । ଏବଂ ନାଟକକୁ ଉପଭୋଗ କରୁ କରୁ ଅଜାଣତରେ ସେ ସେଥିରୁ କିଛି ଶିକ୍ଷାଲାଭ କରିଥାଏ । ନାଟକ ଦେଖିଲାବେଳେ ତାକୁ ଯଦି ବୌଦ୍ଧିକ କସରତ କରିବାକୁ ପଡିଥାଏ ତେବେ ସେ ନାଟକ ପ୍ରତି ବିତସ୍ପୃହ ହୋଇ ପଡେ । ଗଳ୍ପ ଉପନ୍ୟାସ ଇତ୍ୟାଦି ସାହିତ୍ୟର ଅନ୍ୟାନ୍ୟ ବିଭବକୁ ପାଠକ ଏକା ଏକା ପଡି ଆନନ୍ଦିତ ହୋଇଥାଏ । କିନ୍ତୁ ନାଟକ କ୍ଷେତ୍ରରେ ବିଶେଷ ଭାବରେ ଏକଥା ଘଟିନଥାଏ । ମୁଖ୍ୟତଃ ନାଟକ ଏକ ପ୍ରଦର୍ଶନକାରୀ କଳା ହୋଇଥିବାରୁ ଏହା ମଂଚରେ ଅଭିନୀତ ହେଲାବେଳେ ଏକା ସଂଗରେ ଶତାଧିକ ଲୋକ ଦେଖିଥାନ୍ତି ବା ପ୍ରକାରାନ୍ତରେ ଏହାକୁ ପାଠ କରିଥାନ୍ତି । ଯେଉଁ ଦର୍ଶକମାନେ ମଂଚ ସାମ୍ନାରେ ବସି ନାଟକ ଦେଖୁଥାନ୍ତି ସେମାନଙ୍କ ଭିତରେ ଅପାଠୁଆଠୁ ଆରମ୍ଭ କରି ଭୀଷଣପାଠୁଆ, ଛବର୍ଷ ବାଳକ

ବାଳିକାଠୁ ଆରମ୍ଭ କରି ଷାଠିଏ ବର୍ଷର ବିଭିନ୍ନ ଶ୍ରେଣୀର ଦର୍ଶକ ଥାଆନ୍ତି । ତେଣୁ ନାଟକ ଲେଖିଲା ବେଳେ ସମସ୍ତ ପ୍ରକାର ଲୋକଙ୍କ ରୁଚିକୁ ଆଖିରେ ରଖି କିଛି କିଛି ମସଲା ଦେବାକୁ ପଡିଥାଏ । ତେଣୁ ଦର୍ଶକମାନଙ୍କ ରୁଚିକୁ ଅନାଦର କରି ତତ୍ତ୍ୱ ପ୍ରଧାନ ବା ବାର୍ତ୍ତା ଭାରାକ୍ରାନ୍ତ ସାହିତ୍ୟ କେବେ ମଂଚ ସଂଫଳ ନାଟକ ହୋଇପାରେନା ବରଂ ଏହା ଏକ ପ୍ରକାର ବୌଦ୍ଧିକ ପ୍ରତାରଣା ବୋଲି ବିବେଚନା କରାଯାଏ । ଏ ସବୁ କାରଣ ନେଇ ଏ ସବୁ ଦୁର୍ବଳତାରୁ ଦୂରରେ ରହି ଯଥା ସଂଭବ ଦର୍ଶକାଭିମୁଖୀ ନାଟକ ସୃଷ୍ଟି କରିବା ପାଇଁ ସବୁ ସମୟରେ ମୋର ପ୍ରୟାସ ଜାରି ରହିଛି । ଏ ସଂକଳନଟି ମଧ୍ୟ ସେଥିରୁ ବାଦ ଯାଇନି ।

ଏ ସଂକଳନରେ ଥିବା ନାଟକ ସିଦ୍ଧାନ୍ତ ର ରଚନା କାଳ ୧୯୯୪ । ପ୍ରଥମଥର ପାଇଁ ଏହା ନାଟ୍ୟମ ଅନୁଗୋଳ ଆୟୋଜିତ ରାଜ୍ୟସ୍ତରୀୟ ନାଟ୍ୟପ୍ରତିଯୋଗିତାରେ କଳାପରିଷଦ, ଢେଙ୍କାନାଳର ଶିଳ୍ପୀମାନଙ୍କ ଦ୍ୱାରା ପରିବେଷଣ କରାଯାଇଥିଲା ଏବଂ ଏହା ଦ୍ୱିତୀୟ ଶ୍ରେଷ୍ଠ ପ୍ରଯୋଜିତ ନାଟକ ଭାବରେ ପୁରସ୍କୃତ ହୋଇଥିଲା । ଆଉ ମଧ୍ୟ ଏହାର ନିର୍ଦ୍ଦେଶକ ଶ୍ରୀ ଶତ୍ରୁଘ୍ନ ମାଟି, ସଂଗୀତ ନିର୍ଦ୍ଦେଶକ ଅମର ପଟ୍ଟନାୟକ (ଫନି) ଓ ପ୍ରଭାତ ମହାନ୍ତି (ପୁଣ୍ଟୁ) ଶ୍ରେଷ୍ଠ ବିବେଚିତ ହୋଇଥିଲେ । ପରବର୍ତ୍ତି ସମୟରେ ଏହା କଳାପରିଷଦ ଢେଙ୍କାନାଳ ଓ ପଞ୍ଚମବେଦ ରାଉରକେଲା ନାଟ୍ୟ ସଂସ୍ଥା ମାନଙ୍କ ଦ୍ୱାରା ଅନେକ ବାର ମଂଚସ୍ଥ ହୋଇଆସିଅଛି ।

ସଂକଳନର ଦ୍ୱିତୀୟ ନାଟକ ଉତ୍ତର ପୁରୁଷର ରଚନା କାଳ ୧୯୮୯ । ପ୍ରଥମଥର ପାଇଁ ଏହା ଓଡିଶା ସଂଗୀତ ନାଟକ ଏକାଡେମୀ ଆୟୋଜିତ ନାଟ୍ୟ ପ୍ରତିଯୋଗିତା ୧୯୮୯ରେ ପରେ ଭାରତଭାରତୀ ସାଂସ୍କୃତିକ ସମାରୋହରେ କଳାପରିଷଦ ଢେଙ୍କାନାଳ ଦ୍ୱାରା ମଂଚସ୍ଥ ହୋଇଛି ଏବଂ ଶ୍ରେଷ୍ଠ ନାଟ୍ୟ ରଚନା, ଶ୍ରେଷ୍ଠ ନିର୍ଦ୍ଦେଶନା, ଶ୍ରେଷ୍ଠ ପ୍ରଯୋଜନା ପୁରସ୍କାର ଲାଭ କରିଛି । ଏଥିରେ ଅଭିନୟ କରିଥିବା ଶିଳ୍ପୀ ଶ୍ରୀ ଦିପ୍ତିକାନ୍ତ ପତି, ଅଭିନେତ୍ରୀ ଶ୍ରୀମତୀ ଜାନକୀ ପଣ୍ଡା, ଶିଶୁ କଳାକାର ମାନସ ମହାନ୍ତି ଶ୍ରେଷ୍ଠ ବିବେଚିତ ହୋଇ ପୁରସ୍କୃତ ହୋଇଛନ୍ତି । ପରବର୍ତ୍ତି ସମୟରେ ଏ ନାଟକ, କଟକ, ଭୁବନେଶ୍ୱର, ରାଉରକେଲା, ଅନୁଗୋଳ, ବରଗଡ,

ବାଙ୍କି, ଆଠଗଡ଼, ସୁନ୍ଦରଗଡ଼ ଇତ୍ୟାଦି ଅନେକ ମଂଚରେ ବିଭିନ୍ନ ନାଟ୍ୟାନୁଷ୍ଠାନ ମାନଙ୍କ ଦ୍ୱାରା ମଂଚସ୍ଥ ହୋଇ ଦର୍ଶକ ମାନଙ୍କର ଆଦରଲାଭ କରିଅଛି।

ସଂକଳନର ତୃତୀୟ ନାଟକ ସୁଅ ର ରଚନା କାଳ ୧୯୮୪। ଏହା ପ୍ରଥମଥର ପାଇଁ ଢେଙ୍କାନାଳର ସୁନାମଧନ୍ୟ ନାଟ୍ୟ ସଂସ୍ଥା ଶିଳ୍ପୀ ଆୟୋଜିତ ପ୍ରଥମ ରାଜ୍ୟ ସ୍ତରୀୟ ନାଟ୍ୟ ପ୍ରତିଯୋଗିତାରେ ମଂଚସ୍ଥ ହୋଇ ଶ୍ରେଷ୍ଠ ନାଟ୍ୟ ରଚନା, ଶ୍ରେଷ୍ଠ ପ୍ରଯୋଜନା ପୁରସ୍କାର ପାଇବା ସଙ୍ଗେ ସଙ୍ଗେ ଏଥିରେ ଅଭିନୟ କରିଥିବା ଶିଳ୍ପୀ ତିଳୋତ୍ତମା ଖୁଣ୍ଟିଆ ଓ ହାସ୍ୟ ଅଭିନେତା ଇନ୍ଦ୍ରମଣି ବେହେରା ଶ୍ରେଷ୍ଠ ବିବେଚିତ ହୋଇ ପୁରସ୍କୃତ ହୋଇଅଛନ୍ତି। ପରବର୍ତ୍ତି ସମୟରେ ଏହା ବିଭିନ୍ନ ନାଟ୍ୟ ମଂଚରେ ଅଭିନୀତ ହେବା ସଙ୍ଗେ ସଙ୍ଗେ ଦୂରଦର୍ଶନ କେନ୍ଦ୍ର ଭୁବନେଶ୍ୱର ଦ୍ୱାରା ପ୍ରସାରିତ ହୋଇଅଛି। ପୁସ୍ତକ ପ୍ରକାଶନ ଅବସରରେ ମୁଁ ଏ ନାଟକ ଗୁଡ଼ିକର ସଫଳତା ପାଇଁ ସେଇ ଶିଳ୍ପୀ ମାନଙ୍କୁ ଧନ୍ୟବାଦ ଜଣାଉଛି।

ଶେଷରେ ଏ ଯାବତ ମଂଚ ନାଟକ ପାଇଁ ରୁଚି ରଖିଥିବା ନାଟ୍ୟାନୁରାଗୀ ମାନଙ୍କ ଦ୍ୱାରା ଏ ସଂକଳନଟି ଆଦୃତ ହେବ ବୋଲି ଆଶାରଖି ରହୁଛି।

ବଳରାମ ବିହାର — **ଦିଲ୍ଲୀଶ୍ୱର ମହାରଣା**

କ୍ଳାନ୍ତିହରା

ବଳରାମ ବିହାର

ଢେଙ୍କାନାଳ

ତା. ୦୭.୦୭.୦୭

**ଦିଲ୍ଲୀଶ୍ୱର ମହାରଣା**

ନାଟ୍ୟକାର

# ସିଦ୍ଧାନ୍ତ

ରାଜ୍ୟସ୍ତରୀୟ ପ୍ରତିଯୋଗିତାରେ ଦ୍ୱିତୀୟ ଶ୍ରେଷ୍ଠ ପ୍ରଯୋଜନା, ଶ୍ରେଷ୍ଠ ନିର୍ଦ୍ଦେଶନା, ଶ୍ରେଷ୍ଠ ସଙ୍ଗୀତ ନିର୍ଦ୍ଦେଶନା ଓ ଶ୍ରେଷ୍ଠ ଅଭିନୟ ପାଇଁ ପୁରସ୍କାର ପ୍ରାପ୍ତ ।

## ଚରିତ୍ର ଲିପି

ମାଧବ, ଅମର, ପ୍ରଫୁଲ୍ଲ,
ପ୍ରଶାନ୍ତ, ପ୍ରଣବ, ଗୋକୁଳି, କ୍ଷେତ୍ରମୋହନ,
ସୌରଭ, ଘରମାଲିକ, ହଟ, ବଟ,
ଅନ୍ଧ ଓସ୍ତାଦ, ପ୍ରବେଶକ,
ବର୍ଷା, ରାଜଶ୍ରୀ

# ସିଦ୍ଧାନ୍ତ

## ଭାଗ - ୧

### ଅଭିନୟସ୍ଥଳ-୧.........

(ପ୍ରବେଶକ ଆଲୋକ ଆସିବାପରେ ମଞ୍ଚ ଭିତରକୁ ପ୍ରବେଶ କରନ୍ତି। ଅଭିନୟସ୍ଥଳ- ୧ ବ୍ୟତୀତ ମଞ୍ଚର ଅନ୍ୟାନ୍ୟ ଅଂଶ ଅନ୍ଧକାର ଥାଏ।)

ପ୍ରବେଶକ : କଳାନୁରାଗି ଦର୍ଶକ ମାନଙ୍କୁ ଏ ନାଟକର ନାଟ୍ୟକାର, ନିର୍ଦ୍ଦେଶକ ତଥା ଶିଳ୍ପୀମାନଙ୍କ ତରଫରୁ ମୋର ନମସ୍କାର। ନାଟକ ଓ ଆପଣମାନେ, ତା' ଭିତରେ ମୁଁ ବିଚାରା ପ୍ରବେଶକ, କୌଣସି ଅନ୍ତରାୟ ସୃଷ୍ଟି କରିବାକୁ ନୁହେଁ, ବରଂ ଏ ନାଟକର ପାତ୍ର ପାତ୍ରୀ ସମୟ କାଳ ସମ୍ପର୍କରେ ଆପଣମାନଙ୍କୁ କିଛିଟା ସୂଚନାଦେବାକୁ ଉପସ୍ଥିତ ହୋଇଅଛି। ଏଇ କାମକୁ ସହଜ କରିଦେବାକୁ ମୁଁ ମୋର ଭିଡିଓ କ୍ୟାମେରାରେ ସେଇମାନଙ୍କ ଚଳମାନ ଆଲୋକଚିତ୍ର ଉତ୍ତୋଳନ କରିଛି। ଅବଶ୍ୟ ସେ କ୍ୟାମେରା କୌଣସି ଯାନ୍ତ୍ରିକ କ୍ୟାମେରା ନୁହେଁ ବରଂ ମୋର ଏଇ ମନରେ ଉଠାଇଥିବା ଛବି। ତାର ଦୃଶ୍ୟ ମୁଁ ପ୍ରଦର୍ଶନ କରିବିମାତ୍ର ।

### ଅଭିନୟସ୍ଥଳ-୨..........

(ଭାଗବତ ଟୁଙ୍ଗି ଆଲୋକିତ ହୁଏ।ସେଠି କିଛି ଲୋକବସିଛନ୍ତି। ବ୍ରାହ୍ମଣ ଭାଗବତ ପାଠ କରୁଛନ୍ତି।)

ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ ପଦୁ ଗଳୁଛି ମକରନ୍ଦ ॥
ସେ ମକରନ୍ଦ ପାନ କରି ହେଲେ ତରିଲେ ବ୍ରଜନାରୀ ॥

ସେ ବ୍ରଜନାରୀଙ୍କ ପୟରେ          ମନମୋ ଥାଉ ନିରନ୍ତରେ ॥
ମନ ମୋ ନିରନ୍ତରେ ରହୁ          ହାଃ କୃଷ୍ଣବୋଲି ଜୀବଯାଉ ॥
ହାଃ କୃଷ୍ଣବୋଲି ଯାଉଜୀବ          ମୋତେ ଉଦ୍ଧର ରାଧାଧବ ॥
ଆନନ୍ଦେ ଏକ ବାର ହରିବୋଲ------ ।

(ସମସ୍ତେ ହରିବୋଲ ପକାନ୍ତି ।)

ପ୍ରବେଶକ : ବଉଦପୁର ଗାଁର ଭାଗବତ ଟୁଙ୍ଗି । ନା, ବଉଦପୁର ଗାଁର କହିଲେ ଠିକ୍ ହେବନି, ବଉଦପୁର ନିବାସୀ ଶ୍ରୀଯୁକ୍ତ ମାଧବ ସୁନ୍ଦର ସାମନ୍ତରାୟଙ୍କର ଭାଗବତ ଟୁଙ୍ଗି । ଏ ଖଣ୍ଡକ ତାଙ୍କର ବାପ, ଗୋସେଁ ଜେଜେ ବାପ ଅମଳରୁ ଏ ଗାଁର ସଂସ୍କୃତି କେନ୍ଦ୍ର ଭାବେ କାମ କରି ଆସୁଥିଲା । ମାଧବ ବାବୁ ପାଠ ଶାଠ ପଢି, ବାହାରକୁ ଚାଲିଗଲେ, ଆଉ ବାହାରେ ବାହାରେ ସାରା ଜୀବନ କଟେଇ ଦେଲେ । ଏଇ କେତେ ବର୍ଷ ଭିତରେ ଭାଗବତ ଟୁଙ୍ଗିଟି ବି ବନ୍ଦ ହେଇଗଲା । ମାଧବ ବାବୁ ଏବେ ଚାକିରୀରୁ ଅବସର ନେଇଛନ୍ତି । ନିଜର ଚାରି ଚାରି ଟା ଯୋଗା ପୁଅଙ୍କ ପାଖରେ ନରହି ଏ ଗାଁରେ ଆସି ରହିଛନ୍ତି । ତାଙ୍କରି ଚେଷ୍ଟାରେ ଏ ଗାଁରେ ଗଢି ଉଠିଛି ନୂଆ ଏକ କଲେଜ, ଗୋଟେ Girls' High School,ଗୋଟିଏ ନୃତ୍ୟ ସଙ୍ଗୀତ ବିଦ୍ୟାଳୟ । କିଛି ଦିନ ତଳେ ଏ ଭାଗବତ ଟୁଙ୍ଗି ଖଣ୍ଡକର ପୁନରୁଦ୍ଧାର ହୋଇଛି । ଗତ ପୂର୍ଣ୍ଣିମା ଠାରୁ ସେଠି ଭାଗବତ ପାଠ ଆରମ୍ଭ ହୋଇଛି । ମାଧବ ବାବୁ କୁହନ୍ତି ଅତିବଡ଼ୀ ଜଗନ୍ନାଥ ଦାସ ଯେତେ ବେଳେ ଓଡିଆ ଭାଗବତ ଲେଖିଲେ ସେତେ ବେଳେ ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ଭାଗବତ ଲେଖା ହୋଇନ ଥିଲା । ସଂସ୍କୃତ ଭାଗବତ ପରେ ଓଡିଆରେ ପ୍ରଥମେ ଲେଖା ଯାଇଥିବାରୁ ଭାଗବତ ହେଉଛି ଆମର ଗର୍ବ ଓ ଗୌରବ ।

(ମାଧବ ବାବୁ ଓ ଅମର ବାବୁ ଭାଗବତ ଟୁଙ୍ଗିକୁ ଆସନ୍ତି । ଭାଗବତ ଟୁଙ୍ଗିରେ ହରିବୋଲ ଶୁଣାଯାଏ ।)

ଏଥର ମାଧବ ବାବୁଙ୍କ ସହିତ ପରିଚୟ କରାଇଦେବା ଉଚିତ । ଆରେ ମାଧବ ବାବୁ ଆସି ମଝିରେ ବସିଗଲେଣି । ଆଉ ପାଖରେ ଅମରେନ୍ଦ୍ର

ଚୌଧୁରୀ, ମାଧବ ବାବୁଙ୍କ ସାଙ୍ଗ।ସେ ଜଣେ Retired military officer. ତାଙ୍କୁ ଲାଗି ମାଧବ ବାବୁ ବସନ୍ତି।

(ଭାଗବତ ଟୁଙ୍ଗିରୁ ଆଲୋକ ଲିଭିଯାଏ, ଅଭିନୟସ୍ଥଳ- ୩ ଆଲୋକିତ ହୁଏ। ମାଧବ ବାବୁଙ୍କ ଡ୍ରଇଁରୁମ, ମାଧବ ବାବୁଙ୍କ ନାତୁଣୀ ବର୍ଷା ନୃତ୍ୟ ଅଭ୍ୟାସ କରୁଥାଏ ଏକ Tape recorderରୁ ଓଡ଼ିଶୀ ନୃତ୍ୟର ବୋଲ ଶୁଣାଯାଉଥିଲା।)

ପ୍ରବେଶକ : ଏ ହେଲେ କୁମାରୀ ବର୍ଷା। ମାଧବ ବାବୁଙ୍କ ବଡ଼ପୁଅଙ୍କ କନ୍ୟା। ବିଚାରୀ ବର୍ଷା ଜନ୍ମରୁ ତାର ମାଙ୍କୁ ହରାଇଛି ଏବଂ ବାପା ଆମେରିକା ଚାଲିଯାଇ ସେଠି ଜଣେ ଶ୍ୱେତାଙ୍ଗୀ ତରୁଣୀଙ୍କୁ ବିବାହକରି ସବୁଦିନ ପାଇଁ ଅଟକି ଯାଇଥିବାରୁ ତାଙ୍କ ସ୍ନେହରୁ ବି ବଞ୍ଚିତ ହେଇଛି। କେଜେ ମାଧବ ବାବୁ ହେଉଛନ୍ତି ବର୍ଷାର ସବୁକିଛି। ସେ ଏବେ ପ୍ଲସ୍ ଥ୍ରୀର ଛାତ୍ରୀ ଏବଂ ଟା ଛଡା ଗାଁରେ ଗଡି ଉଠିଥିବା ସଂଗୀତ ବିଦ୍ୟାଳୟରେ ଓଡିଶୀ ନୃତ୍ୟ ମଧ୍ୟ ଶିକ୍ଷା କରୁଛନ୍ତି।

(ନୃତ୍ୟ ଅଭ୍ୟାସ ଚାଲିବା ଭିତରେ ଗୋକୁଳି ବାବୁ ଆସି ବସିଯାଆନ୍ତି। ଗୋକୁଳି କୁ ଦେଖି ବର୍ଷା ତା'ର ନୃତ୍ୟ ଅଭ୍ୟାସ ବନ୍ଦ କରିଦିଏ।)

ହେଇ ଗୋକୁଳି ବାବୁ ବି ଆସି ପହଞ୍ଚି ଗଲେଣି।

ଗୋକୁଳି : ବନ୍ଦ କଲୁ କାହିଁକି ଚାଲୁ।

ବର୍ଷା : ନା ଏମିତି ଲୁଚି ଲୁଚି ଦେଖିଲେ ମୁଁ ଆଦୌ ନାଚି ପାରିବିନି।

ଗୋକୁଳି : ଲୁଚି ଲୁଚି ଦେଖିଲେ ନାଚି ପାରିବୁନି ମୁଁ ତାହେଲେ ସାମ୍ନାରେ ବସିଯାଉଛି। ଏଥର ନାଚ।

ବର୍ଷା : ଊଁ ତମେ ଗଲ। (ଅଭିମାନ କରି ବସିଛି।)

ଗୋକୁଳି : ଆରେ ୟେ କ'ଣ ? ତୁ ମୋ ସାମ୍ନାରେ ନାଚିବାକୁ ଲାଜ କରିବୁତ function ମାନଙ୍କରେ ଏତେ ଲୋକଙ୍କ ସାମ୍ନାରେ ନାଚିବୁ କେମିତି ?

ବର୍ଷା : (ହାତ ଧରି ଗୋକୁଳିକୁ ଉଠାଇ)ତୁମେ ଏ ଘରୁ ଜଲଦି ଗଲ।

ଗୋକୁଳି : ଆରେ ମୋତେ ଏମିତି ଜବରଦସ୍ତ ତଡି ଦେଲେ ମୁଁ କ'ଣ ଯିବି।

କେକେ ମୋତେ ଡକେଇଛନ୍ତି । ତାଙ୍କ ସହିତ ଆଲୋଚନା ଅଛି । ଚାଲିଗଲେ ସେ ଖରାପ ଭାବିବେନି !

ବର୍ଷା : (ଅଭିମାନରେ ଯାଇ ଅନ୍ୟ ଏକ ସ୍ଥାନରେ ବସିଛି ।) ତୁମେ ନଗଲା ଯାଏଁ ମୁଁ କିଛି କରିବିନି କହିଦେଉଛି ।

ଗୋକୁଳି : ମୁଁ ଜାଣିଛି, ହେଲେ ମୁଁ କ'ଣ କରିବି ? କେକେତ Walkରେ ବାହାରକୁ ଯାଇଛନ୍ତି । ସେ ଫେରିଲା ପର୍ଯ୍ୟନ୍ତ ମୋତେ ଅପେକ୍ଷା କରିବାକୁ ପଡିବ ।

ବର୍ଷା : ଗୋକୁଳି ଭାଇ, ତୁମେ ଯାଇ ସେପଟ ଘରେ ବସନା, Please, ନହେଲେ ମୁଁ କାନ୍ଦିବି କହି ଦେଉଛି ।

ଗୋକୁଳି : ସତେ ! କାନ୍ଦିଲୁ ଦେଖି, କେତେ ସୁନ୍ଦର କାନ୍ଦି ପାରୁଛୁ, ମୁଁ ଦେଖେ। ଆରମ୍ଭ କର- One, Two, Three. ଆରେ ଉଠି ପଳେଇ ଯାଉଛୁ କୁଆଡେ।

(ଗୋକୁଳି ତାକୁ ହାତ ଦେଖାଇ ଅଟକାଇ ଦେଇଛି, ବର୍ଷା କୃତ୍ରିମ କ୍ରୋଧରେ ଫେରି ଆସି ବସି ଯାଇଛି। "ଆଜି କି ଗୁମାନରେ ଚନ୍ଦ୍ରାନନା" ଗୀତଟିକୁ ଗୋକୁଳି ଗାଇଛି। ଶେଷରେ ଗୋକୁଳି ଆଉ ବର୍ଷା ହସି ହସି ଭିତରକୁ ଯାଇଛନ୍ତି।)

ପ୍ରବେଶକ : ହଁ ଗୋକୁଳି ବାବୁ ହେଉଛନ୍ତି ଏ ଗାଁର ଯୁବକ, କଲେଜର ଅଧ୍ୟାପକ, ମାଧବ ସୁନ୍ଦରଙ୍କ ସବୁ କାମରେ ଏ ହେଉଛନ୍ତି ତାଙ୍କର ଡାହାଣ ହାତ । ଗୋକୁଳି ବାବୁଙ୍କ ବିଶେଷ ଗୁଣ ହେଲା ସେ ଜଣେ ସୁନ୍ଦର ସଂଗଠକ, ଗାୟକ ଓ ବକ୍ତା । ଯାହା କରନ୍ତି ନିଷ୍ଠାର ସହ କରନ୍ତି । ତେଣୁ ମାଧବ ବାବୁଙ୍କ ତାଙ୍କ ଉପରେ ଗଭୀର ବିଶ୍ୱାସ । ହଁ, ଏଥର ଆସନ୍ତୁ, ମାଧବ ବାବୁଙ୍କ ଦ୍ୱିତୀୟ ପୁତ୍ର ପ୍ରଫୁଲ୍ଲ ବାବୁଙ୍କ ସହିତ ପରିଚୟ କରାଇ ଦିଏ । ସେ ଜଣେ Engineer, ଦିଲ୍ଲୀରେ ତାଙ୍କର ଚାକିରୀ ।

(ଅନ୍ୟ ଏକ କୋଣରେ ଆଲୋକ ଜଳିଉଠେ । ପ୍ରଫୁଲ୍ଲ ବାବୁ ମାତାଲ ଅବସ୍ଥାରେ ଫେରୁଛନ୍ତି। ତାଙ୍କୁ ତାଙ୍କ Driver ଧରି ଆଣି କବାଟ ପାଖରେ ଛାଡିଛି ।)

ପ୍ରଫୁଲ୍ଲ : (ବହାରୁ) ମେଁ ଠିକ୍ ହୁଁ.... ତୁମ୍ ଯାଓ ...... ଯାଓନା ..... (ଡ୍ରାଇଭର ଚାଲିଯାଏ) ଶଳା ମୋତେ suspend କରିବାକୁ ଧମକ

ଦେଉଛି । କେତେ ତାକତ ଅଛି କରତ ଦେଖି ? ତୁ ଶଳା Chief Engineer, ହେଇଛୁ ,ଏକା ଖାଇବୁ? ଅନ୍ୟମାନେ କିଛି ପକାଇଲେ suspend କରିବୁ । ତୋ Transfer କରେଇବି । ଘଟଅପ୍ ।

(ଏହାକହି ଘର ଭିତରକୁ ଚାଲିଯାଏ । ପ୍ରଫୁଲ୍ଲ ବାବୁଙ୍କ ଉପରୁ ଆଲୋକ ଲିଭିଯାଏ । ଅନ୍ୟ ଏକ କୋଣରେ ଜଳି ଉଠେ, ଫୋନ୍ ରିଙ୍ଗ ହୋଇଛି, ଫୋନ ଉଠାଇବା ପାଇଁ ପ୍ରଶାନ୍ତ ବାବୁ ଘରଭିତରୁ ଆସିଛନ୍ତି ।)

ପ୍ରଶାନ୍ତ (Phone receiver ଧରି) ହ୍ୟାଲୋ - କହୁଛି, ଏଁ, ଏଁ, ହେଁ ହେଁ- ଉଁ ହୁଁ ହୁଁ ହୁଁ....ନାନା....ହଁ । ଏଁ.....ହୁଁ ହୁଁ ହେଲା । ହଁ ହଁ- ହେହେହେ....ଚଳିବ ଚଳିବ ଏଁ ହଁ ହଁ ।

ପ୍ରବେଶକ : ଏଇ ବାବୁଙ୍କ କଥାରୁ ଆପଣମାନେ କିଛି ବୁଝିପାରୁଛନ୍ତି ଆଜ୍ଞା ! ନା, ଆପଣ କିଛି ବୁଝିପାରିବେନି । ଏ ହେଉଚି ଖାଣ୍ଟି ବେପାରୀ ଭାଷା । Phone କରିଆରେ ବେପାର ଚାଲିଛି । ମାନେ କିନିଷର ଦାମ କଷାକଷି ଚାଲିଛି ।

ପ୍ରଶାନ୍ତ (Phone ରେ ) ହଁ ହଁ.....ନା ନା.... ।

(ପ୍ରଶାନ୍ତ ବାବୁଙ୍କ ପୁଅ ଭିତରୁ ଆସେ, ତା'ର ନାଁ ଡାନି ।)

ଡାନି : Daddy Daddy.......

ପ୍ରଶାନ୍ତ : (ଚୁପ ରହିବାକୁ ଇସାରା ଦେଇ ପୁଣି ଫୋନରେ) ହଁ ହଁ....ନା ନା ନା ।

ଡାନି : Daddy, Mommy ବାହାରି ଲାଣି ।

ପ୍ରଶାନ୍ତ : (ବିରକ୍ତ ହୋଇ)ଚୁପ୍ , ବସ ସେଇଠି ।

(ପୁଣି ଫୋନରେ କଥାବାର୍ତ୍ତା ହେଲେ । ବିରକ୍ତ ହୋଇ ପ୍ରଶାନ୍ତ ବାବୁଙ୍କ ସ୍ତ୍ରୀ ମୀନା ଦେବୀ ଆସି ଡାନିକୁ କହିଛନ୍ତି । ଆବଶ୍ୟକ ହେଲେ ମୀନାର ସଂଳାପ ଅନ୍ତରାଳରୁ ଦିଆଯାଇ ପାରେ)

ମୀନା : (ଡାନିକୁ) ବାପାଙ୍କୁ ଯିବାକଥା କହିଲୁ ?

(ଡାନି କିଛି ନକହି ଚୁପ୍‌ଚାପ୍ ରହେ)

ମୀନା : (ପ୍ରଶାନ୍ତ ପାଖକୁ ଯାଇ) ତମର କ'ଣ ସମୟ ଜ୍ଞାନ ନାହିଁ।
ପ୍ରଶାନ୍ତ : ଓଁ କ'ଣ କହିଲ, ସମୟ। (ହସିଛି)
ମୀନା : ଛି ଛି ପେଟେ ପି' ଦେଇ ଆସିଛ, ଭଦ୍ରଲୋକଙ୍କ ଘରକୁ ଗଲେ କ'ଣ ଭାବିବେ ?
ପ୍ରଶାନ୍ତ : (ହସି) ଭଦ୍ରଲୋକ, ଭଦ୍ରଲୋକ ମାନେ Wel come କରିବେ।
ମୀନା : ହଁ ହଁ Wel come କରବେ, ହଉ ତମକୁ Wel come କରୁଥାନ୍ତୁ। ଚାଲ ଡାନି ଆମେ ଯିବା।
ପ୍ରଶାନ୍ତ : ହଁ ହଁ ରୁହ ସାଙ୍ଗ ହୋଇଯିବା, ମୁଁ ଟିକିଏ Fresh ହୋଇଯାଏ।
ମୀନା : ତମେ ତମ Fresh ହୋଇ ପଛରେ ଆସ, ତମେ ପିଇଛ, ମୁଁ ତୁମ ସାଙ୍ଗରେ ଯିବିନି। ଚାଲ ଡାନି ଆମେ ଯିବା।
ପ୍ରଶାନ୍ତ : ଆରେ ବୁଝିଲ ଆଜି କାଲି ମଦ ନପିଇଲେ Aristocrat family ଲୋକ ବୋଲି ଜାଣିବେ କେମିତି ? ହଁ (ହସିଛି)
ମୀନା : (ଡ୍ୟାନି ହାତଧରି) ଚାଲ ଡ୍ୟାନି।
ପ୍ରଶାନ୍ତ : ନା, ସେ ମୋ ସାଙ୍ଗରେ ଯିବ।
ମୀନା : ନା, ସେ ମୋ ସାଙ୍ଗରେ ଯିବ।
ପ୍ରଶାନ୍ତ : କହିଲି ପରା ମୋ ସାଙ୍ଗରେ ଯିବ।
ମୀନା : ମୁଁ କହିଲି ପରା ମୋ ସାଙ୍ଗରେ ଯିବ।
ଡାନି : (ଦୁହିଁଙ୍କୁ ଛାଡି ଦେଇ) ନାଁ ମୁଁ କାହା ସାଙ୍ଗରେ ଯିବିନି।
ମୀନା : ମୋ ସୁନାଟା ପରା, ମୋ ସାଙ୍ଗରେ ଚାଲ।
ଡାନି : ନା।, ତମେ Club attend କରୁଛ ମୁଁ ଯିବିନି।
ମୀନା : କ'ଣ କହିଲୁ, ମୁଁ Club attend କରୁଛି !
(ଶାସନ କରିବା ଢଙ୍ଗରେ)
ପ୍ରଶାନ୍ତ : ଠିକ୍ କହିଛି , ଡାନି, ମୋ ହୀରାଟା ପରା, ମୋ ସାଙ୍ଗରେ ଯିବୁନା!
ଡାନି : ନାଁ ତମେ ମଦ ପିଉଛ, ମୁଁ ଯିବିନି।
ପ୍ରଶାନ୍ତ : କ'ଣ କହିଲୁ, ମମି ସାଙ୍ଗରେ ଯିବୁନି, ଡାଡି ସାଙ୍ଗରେ ଯିବୁନି। ଆଉ କାହା ସାଙ୍ଗରେ ଯିବୁ ! (ଚାପୁଡା ମାରିଛି)
ଡାନି : ମୁଁ ଏଥର ଗାଁକୁ ଗଲେ ଗ୍ରାଣ୍ଡପାଙ୍କ ପାଖରେ ରହିବି। ମୁଁ ତୁମ ମାନଙ୍କ ପାଖରେ ରହିବିନି।

(ଏହା କହି ତାନି କାନ୍ଦି କାନ୍ଦି ସିଡି ଉପରକୁ ଚାଲିଯାଏ)

ପ୍ରଶାନ୍ତ
ମୀନା : ଜାନି।

(ସେମାନଙ୍କ ଉପରୁ ଆଲୋକ ଲିଭି ଯାଇଛି।)

ପ୍ରବେଶକ : ଆଜ୍ଞା ଏ ହେଉଛନ୍ତି, ପ୍ରଶାନ୍ତ ବାବୁ। ବର୍ତ୍ତମାନ ରାଉରକେଲାର ବାସିନ୍ଦା, ମାନେ ଏ ଯେଉଁ ମୀନା ଦେବୀଙ୍କୁ ଦେଖିଲେ, ଏ ହେଉଛନ୍ତି ତାଙ୍କର ଗୃହପାଳିତ ସ୍ୱାମୀ। ବୁଝି ପାରିଲେନି ଆଜ୍ଞା, ଇଏ ଏଇଠି ମୀନା ଦେବୀଙ୍କ ଘରେ ଘରଜ୍ୱାଇଁ ହୋଇ ରହିଛନ୍ତି ଆଉ ମୀନା ଦେବୀଙ୍କ ବାପାଙ୍କ ବ୍ୟବସାୟକୁ ଚଲାଉଛନ୍ତି। ପ୍ରଶାନ୍ତ ବାବୁ ବ୍ୟବସାୟରେ ଖୁବ ଧୁରନ୍ଧର। ଶଶୁରଙ୍କ ବ୍ୟବସାୟକୁ ବେଶ ବଢାଇ ଦେଇଛନ୍ତି। ହେଲେ ମୀନା ଦେବୀଙ୍କ ପାଖରେ ସବୁବେଳେ ଲାଞ୍ଜ ଜାକି କୁଁ କୁଁ ହେବା ଅଭ୍ୟାସ। ସେଇଥି ପାଇଁ କହିଲି ମୀନାଦେବୀଙ୍କ ଗୃହପାଳିତ ସ୍ୱାମୀ।

ଆଚ୍ଛା ଆପଣମାନେ ହସିଲେ କାହିଁକି ? ଓହୋଃ ଆପଣମାନେ ସ୍ୱାମୀର ପ୍ରକାର ଭେଦ ଜାଣିନାହାନ୍ତି ପରା । ଏଇ ଯେମିତି ପକେଟ ସ୍ୱାମୀ, Two-in-one ସ୍ୱାମୀ, Three-in-one ସ୍ୱାମୀ, Duplicate ସ୍ୱାମୀ, Second hand ସ୍ୱାମୀ, ଖୁଚୁରା ସ୍ୱାମୀ, ଦାମିକା ସ୍ୱାମୀ, ଗଦ୍ ଗଦ୍ ସ୍ୱାମୀ, ହକର ସ୍ୱାମୀ, Show case ସ୍ୱାମୀ, Multi purpose ସ୍ୱାମୀ, ଇତ୍ୟାଦି ଇତ୍ୟାଦି। ଛାଡନ୍ତୁ ସମୟ ସୁଯୋଗ ହେଲେ ସେ ବିଷୟରେ ଉଦାହରଣ ଦେଇ କୁହାଯିବ।

(ମଞ୍ଚର ଆଲୋକ ଅନ୍ୟ ଏକ ଅଞ୍ଚଳରେ ଜଳିଉଠିଲା। ପ୍ରଣବ, ମାଧବାବୁଙ୍କ ସାନ ପୁଅ ଓ ତାଙ୍କ ସ୍ତ୍ରୀ ରାଜଶ୍ରୀ କଥା ବାର୍ତ୍ତା ହୋଇ ରାସ୍ତାରେ ଚାଲିଛନ୍ତି)

ପ୍ରବେଶକ : ଏ ହେଉଛନ୍ତି ପ୍ରଣବ ସାମନ୍ତ ରାୟ। ମାଧବବାବୁଙ୍କ ସାନ ପୁଅ। ବମ୍ବେରେ କୌଣସି ଏକ English paper ର Sub-editor। ସମାଜ ସଂସ୍କାର ଉପରେ ସୁନ୍ଦର ସୁନ୍ଦର ପ୍ରବନ୍ଧ ଲେଖି ବେଶ ପ୍ରଶଂସିତ। କିଛି ଦିନ ତଳେ ଅଚାନକ ଜଣେ ମରାଠୀ ଯୁବତୀ ରାଜଶ୍ରୀଙ୍କୁ କୋର୍ଟରେ ବିବାହ କରିଛନ୍ତି। ଅବଶ୍ୟ ବାପାଙ୍କୁ ଏଥି

ସମ୍ବନ୍ଧୀୟ ଏକ ପତ୍ର ଦେଇ ସବୁ କଥା କଣାଇଦେବାକୁ ସେ ଭୁଲି ନାହାନ୍ତି । ଆରେ ଆରେ ଆପଣମାନଙ୍କୁ ସୁବିଧା ପାଇଁ ମୁଁ ସେମାନଙ୍କୁ ଟିକିଏ ଫ୍ରିଜ୍ କରିଦେଉଛି ।

(ପ୍ରବେଶକ ସଂକେତ ଦ୍ୱାରା ତାଙ୍କ କାଳ୍ପନିକ ରିମୋଟିକୁ ଅନ୍ କରନ୍ତି । ପ୍ରଣବ ଓ ରାଜଶ୍ରୀ ହଠାତ୍ ସେମିତି ଚାଲିବା ଭଙ୍ଗିରେ freeze ହୋଇଯାଆନ୍ତି । ପରେ ପରେ ଆଲୋକ ସେମାନଙ୍କ ଉପରୁ ଲିଭି କ୍ଷେତ୍ରମୋହନଙ୍କ ଉପରେ ପଡେ । କ୍ଷେତ୍ରମୋହନ କୌଣସି ଏକ ସଭାରେ ଭାଷଣ ଦେଉଛନ୍ତି । ମଝିରେ ମଝିରେ ଘନଘନ କରତାଳି ଶୁଣାଯାଉ ଥାଏ । )

କ୍ଷେତ୍ର : କଳିଙ୍ଗାଃ ସାହାସିକାଃ, ଯାହା କୁହାଯାଇଛି ସେ କଥା କଳିଙ୍ଗ ଯୁଦ୍ଧରେ ପ୍ରମାଣିତ ହୋଇଛି । ଉତ୍କୃଷ୍ଟ କଳାର ଦେଶ ଉତ୍କଳ, ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏ ଦେଶର କଳା ସଂସ୍କୃତି, ସାହିତ୍ୟ ସବୁକିଛି ଥିଲା ଉଚ୍ଚ ମାନର । ଏ ଦେଶରେ ସାଧବପୁଅ ଜାଭା, ସୁମାତ୍ରା, ବର୍ଣ୍ଣିଓ ଭଳି ଦରିଆପାରି ଦେଶକୁ ଯାଇ..... ।

(ଆଲୋକ କ୍ଷେତ୍ରମୋହନଙ୍କ ଉପରୁ ହଠାତ୍ କ୍ଷୀଣ ହୋଇଯାଇ ପ୍ରବେଶଙ୍କ ଉପରେ ପ୍ରକାଶିତ ହୁଏ । କ୍ଷେତ୍ରମୋହନଙ୍କ ଭାବଭଙ୍ଗୀ ଦେଖାଯାଉଥାଏ । କିନ୍ତୁ ତାଙ୍କର ଭାଷଣ ଶୁଣାଯାଉ ନଥାଏ।)

ପ୍ରବେଶକ : ଏ ହେଉଛନ୍ତି, କ୍ଷେତ୍ରମୋହନ ସେନାପତି । ପ୍ରଫେସନ ଓକିଲାତ, ନିଶା ହେଉଛି ରାଜନୀତି । ବର୍ତ୍ତମାନ ସେ ପଞ୍ଚାୟତ ସମିତିର ସଭାପତି । ବଡ ଗଭୀର ଏ ମହାଶୟଙ୍କ ଓଡିଆ ପ୍ରୀତି । କଥା କଥାକେ କେବଳ ୟାଙ୍କର ଓଡିଆ ଜାତି, ଓଡିଆ ଜାତି, ଓଡିଆ ଜାତି । (ହସି) କ୍ଷମା କରିବେ ଆଜ୍ଞା ବିଶେଷ ତି'ପ୍ରତ୍ୟୟ ହୋଇଗଲା । ନେତା ବାବୁ ହେଉଛନ୍ତି ମାଧବବାବୁଙ୍କ ସମୁଦି ଅର୍ଥାତ ପ୍ରଫୁଲ୍ଲ ବାବୁଙ୍କ ଶଶୁର । ତାଙ୍କରି ପରିଚୟ ଯାହାହେଉନା କାହିଁକି , ସେ ଜଣେ ଖାଣ୍ଟି ଓଡିଆ ବୋଲି କଥାରେ କାମରେ ସବୁଠି ପ୍ରମାଣ କରନ୍ତି ।

(ପୂର୍ବଭଳି ଆଲୋକ କ୍ଷେତ୍ରମୋହନଙ୍କ ଉପରେ ଉଜ୍ଜ୍ୱଳ ଭାବରେ ପ୍ରକାଶିତ ହୁଏ, ତାଙ୍କ ଭାଷଣରେ ଶେଷ ଭାଗ ଶୁଣାଯାଏ।)

କ୍ଷେତ୍ର : କେତେଟା ଓଡିଆ ଉପନ୍ୟାସ ହିନ୍ଦି ଫିଲ୍ମ ହୋଇଛି ? କେତେ ଜଣ ଓଡିଆ ହିନ୍ଦି ଫିଲ୍ମରେ କାମ କରନ୍ତି ? କେତେ ଓଡିଆ ଇଣ୍ଡିଆର Cricket Teamରେ ଭାଗ ନେଇଛନ୍ତି ? କେତେ ଜଣ ଓଡିଆ Olympicରେ ଭାଗ ନେଇଛନ୍ତି ? ପୁରୀ ସମୁଦ୍ର କୂଳରେ କେତେ ଓଡିଆଙ୍କ ଘର ଅଛି ? ଓଡିଶାର ପ୍ରତ୍ୟକ ସହର ମାନଙ୍କରେ କେତେ ଜଣ ଓଡିଆ ବଡ ବଡ ବ୍ୟବସାୟୀ ଅଛନ୍ତି ? ଆନ୍ଧ୍ରାରୁ ଅଣ୍ଡା, ଆନ୍ଧ୍ରାରୁ ମାଛ, ଆନ୍ଧ୍ରାରୁ କଦଳୀ, ବଙ୍ଗରୁ ଆଳୁ, ବିହାରରୁ ପରିବା ଓଡିଶାକୁ ଆସୁଛି।ହେଲେ ଓଡିଶାରୁ କେତେ କିନିଷ ବାହାରକୁ ଯାଉଛ ? କୁହନ୍ତୁ ମୋ କଥାର ଉତ୍ତର ଦିଅନ୍ତୁ ? ଆଜ୍ଞା ଆପଣ ମାନେ ପଢିଥିବେ କିଛି ଦିନତଳେ ଗୋଟିଏ ପେପରରେ ବାହାରିଥିଲା ଇଂରାଜୀ ଭାଷାରେ ଲିଖିତ ଏନ୍‌ସାଇକ୍ଳୋପିଡିଆ ଭଳି Dictionaryରେ ଓଡିଆ ଶବ୍ଦର ଅର୍ଥ ଦିଆଯାଛି- କୁଲି । ଓଡିଆମାନେ କୁଲି ବା ସିଧା ଭାବରେ କହିଲେ ଭାରବାହୀ ପଶୁ ବା ଅନ୍ୟ ମଣିଷର ଯିଏ ବୋକ୍‌ଚା ବହନକରେ, ପ୍ରକୃତରେ ଏଜାତିକୁ ବଳଦ କରି ଦିଆଯାଇଛି- ବଳଦ। ମୁଁ ସେଇଥିପାଇଁ କହୁଥିଲି ଏ ଜାତିର ଉତ୍‌ଥାନ ପାଇଁ କାମ କରିବାକୁ ପଡିବ।

(ଆଲୋକ କ୍ଷେତ୍ରମୋହନ ଉପରୁ ଲିଭିଯାଏ।)

ପ୍ରବେଶକ : ଏ ଜାତିର ଉତ୍‌ଥାନ ପାଇଁ କାମ କରିବାକୁ ପଡିବ କିନ୍ତୁ କରିବ କିଏ ? ଛାଡନ୍ତୁ ଆଉ ମାତ୍ର ଜଣଙ୍କ ସହିତ ପରିଚୟ କରେଇ ଦେଇ ମୁଁ ବିଦାୟ ନେବି ।

(ଆଲୋକ ଅନ୍ୟ ଏକ ସ୍ଥାନରେ ଜଳି ଉଠିଲା ଦେଖାଗଲା ସୌରଭ ବାବୁ ହାତରେ ଏକ କବିତା ବହି ଧରି ବସିଛନ୍ତି। ତାଙ୍କ ପାଖରେ ଘର ଭଡା ନେବା ଆଶାରେ ଘରମାଲିକ ବସିଛନ୍ତି।)

ସୌରଭ : ଘର ଭଡା ନେବେତ ବ୍ୟସ୍ତ କାହିଁକି । ଶୁଣନ୍ତୁ ଆଉ ଗୋଟେ କବିତା ଶୁଣି ଯାଆନ୍ତୁ। ଏ କବିତା ଗତ ବର୍ଷ ଯେତେବେଳେ ଗୋଟେ ସାହିତ୍ୟ

ସମ୍ମେଳନରେ ପଢିବାକୁ ଆରମ୍ଭକଲି କ'ଣ କହିବି ଆଜ୍ଞା ଗୋଟେ ପଦ ପଢୁଥାଏ ଘନ ଘନ ତାଳି-ପୁଣି ପଦେ ଶେଷ ହେଉଥାଏ-ତାଳି। ଶେଷ ପଦ ବେଳକୁ ଦର୍ଶକ ଆଉ ବସିନପାରି ଠିଆ ହେଇଗଲେ। ବୁଝିଲେ ସାହିତ୍ୟ ଭିତରେ ଉତ୍କୃଷ୍ଟ Creat କରିବା ସବୁଠୁ ବଡକଥା। ଶୁଣନ୍ତୁ କେମିତି ଶବ୍ଦ ସଂଯୋଜନା, କେମିତି ଭାଷା, କେମିତି ରୂପକଳ୍ପ (କବିତା ପଢିବାକୁ ଲାଗିଲେ।)

ଘରମାଲିକ : ଆଜ୍ଞା ଘରଭଡାଟା ଦେଇଥିଲେ ସ୍ତ୍ରୀକୁ ଡାକ୍ତର ପାଖକୁ ନେଇଥାନ୍ତି।

ସୌରଭ : ଘରଭଡା ନେବତ, ମୋ ସ୍ତ୍ରୀ ବର୍ତ୍ତମାନ Bath roomରେ, ସେ Bath room ରୁ ବାହାରିଲେ ଦେଇଦେବେ। କବିତା ଶୁଣନ୍ତୁ।

ଘରମାଲିକ : ଗତ ମାସରେ ଭଡା ନେଲା ବେଳେ ଆପଣଙ୍କ ସ୍ତ୍ରୀ ବାଥରୁମରେ ଥିଲେ। ସେତେବେଳେ ୩୮ଟା କବିତା ଶୁଣାଇ ଥିଲେ, କିନ୍ତୁ ଆଜି ମୋର ଟିକିଏ ସମୟ ନାହିଁ।

ସୌରଭ : ତା'ମାନେ ଆପଣ ଓ ଆମ ଭିତରେ ସଂମ୍ପର୍କ ଟା କେବଳ ଏ ଘର ଭଡା ନେଇ। ଓଡିଆ ଜାତି ଓଡିଆ ଭାଷା ପ୍ରତି ଆପଣଙ୍କର କିଛି କର୍ତ୍ତବ୍ୟ ନାହିଁ ? କବିତା ଶୁଣିବେନି ?

ଘରମାଲିକ : ନାଇଁ, ଶୁଣିବାକୁ ତ ମନ କରୁଛି ଯେ ।

ସୌରଭ : ମନକରୁଛନ୍ତି ଯଦି ଶୁଣନ୍ତୁ, ଯେଉଁ କବିତା ଶୁଣେଇବି- ଏ ପ୍ରକାର କବିତାକୁ ମୁଁ ଯୋଗ କବିତା ବୋଲି ନାଁ ଦେଇଛି। ଏ କବିତାକୁ ବାଗେଇ କରି ପଢିଦେଲେ କିମ୍ବା ଶୁଣିଦେଲେ ଆପଣଙ୍କର କବିତା ଯୋଗ ହୋଇଯିବ। ଏଥିରେ ହାର୍ଟବେମାରି ଭଲ ହୋଇଯିବ । ଆପଣଙ୍କର ଥରେ Stroke ହୋଇଥିଲା ନା ?ସେଇଥି ପାଇଁ ଯାକୁ ବାଛିଚି, କବିତା ଶୁଣନ୍ତୁ। (ସୌରଭ ବାବୁ କବିତା ପଢନ୍ତି।)

ପ୍ରବେଶକ : କବିଜଣକ ଓଡିଆ ଅଧ୍ୟାପକ ସୌରଭ ରାଉତରାୟ। ମାଧବ ବାବୁଙ୍କ କୁଆଇଁ, ମୋ ଭିଡିଓ କ୍ୟାମେରାରେ ଏ ଦୃଶ୍ୟ ଗ୍ରହଣ କଲାବେଳେ ବହୁତ ସମୟ ବରବାଦ ହେଇଛି। ଆପଣ ମାନଙ୍କ ସୁବିଧା ପାଇଁ ଟିକିଏ first forword କରିଦେଏ।

(ପ୍ରବେଶକ ରିମୋର୍ଟ ଦ୍ୱାରା ସୁଇଜ ଅପରେଟ କରନ୍ତି। ସୌରଭଙ୍କର କବିତା ପଢା, ଘରମାଲିକଙ୍କ ବ୍ୟସ୍ତତାର ଦୃଶ୍ୟ

video ରେ first forword ହେଲାଭଳି ଅଭିନୀତ ହୁଏ। ସୌରଭ ଠିଆ ହୋଇ, ବସି ଆଷ୍ଟେଇ ପଡି କବିତା ପଢିଚାଲନ୍ତି। ଘରମାଲିକ ଆଙ୍ଗୁଠି ଦେଖାଇ ଏକ ଯିବା ପାଇଁ ସଂକେତ କରନ୍ତି। ସୌରଭ କବିତା ପଢି ଚାଲନ୍ତି। ଘରମାଲିକ ଘରଭିତରେ ବୁଲିବାକୁ ଆରମ୍ଭ କରନ୍ତି। ସୌରଭ ତା ପଛେ ପଛେ ବୁଲି ପଢି ଚାଲନ୍ତି। ଘରମାଲିକ ଦୌଡିବା ଆରମ୍ଭ କରନ୍ତି । ସୌରଭ ତାଙ୍କ ପଛେ ପଛେ ଦୌଡନ୍ତି। ଶେଷରେ କଚାଡି ହୋଇ ପଡିଯାଆନ୍ତି।ଘର ମାଲିକ ପଳାଇ ଯାଆନ୍ତି।)

ସୌରଭ : ଏ ଓଡିଆ ଗୁଡା ଆଉ ହେବେନି।

(ଆଲୋକ ସୌରଭ ଉପରୁ ଲିଭି ପ୍ରବେଶକ ଉପରେ ପଡେ)

ପ୍ରବେଶକ : ଛାଡନ୍ତୁ, ଆପଣ ମାନଙ୍କର ବହୁତ ସମୟ ନେଲି। ବର୍ତ୍ତମାନ ଆପଣମାନଙ୍କୁ ଘଟଣା ପାଖକୁ ନେଇଯାଉଛି। ସୁଯୋଗ ମିଳିଲେ ପୁଣି ଦେଖା ହେବ। ନମସ୍କାର ।

(ଏ ଦୃଶ୍ୟରେ କିଛି ଛୋଟ ଛୋଟ ହାସ୍ୟ କବିତା ଦାଆଯାଇ ପାରେ। ନାଟକ ଶେଷରେ ସେଇଭଳି କିଛି କବିତାର ନମୁନା ଦିଆ ଯାଇଛି) *

## ଭାଗ - ୨

(ମାଧବ ବାବୁଙ୍କ ବୈଠକ ଗୃହ ବାହାରୁ ମାଧବ ବାବୁ ଓ ଅମର ବାବୁ ଆସିଛନ୍ତି। ଦୁଇ ବନ୍ଧୁ ଏବେ ସାଙ୍ଗହୋଇ ଆସିଛନ୍ତି। ସେମାନେ Evening walk ରୁ ଫେରିବା ପୋଷାକରେ ଅଛନ୍ତି। ମାଧବ ବାବୁ ଧୋତି, ପଞ୍ଜାବି, ଅମରବାବୁ , ସ୍ପୋର୍ଟ ବେନିୟାନ ମୁଣ୍ଡରେ କ୍ୟାପ, ହାତରେ ବାଡି।)

ଅମର : ମୁଁ ତାହାହେଲେ ଯାଉଛି ମାଧବ।

ମାଧବ : ଯିବୁତ ଏତେ ବ୍ୟସ୍ତ କାହିଁକି ? ବସ୍। ସେ ବିଷୟରେ ଟିକିଏ କଥାବାର୍ତ୍ତା ହେଇଯିବା।

ଅମର : ଦେଖ ମୁଁ ମାଗଣାରେ କଥାବାର୍ତ୍ତା ହେଇ ପାରିବିନି। Walkରୁ ଫେରିଲା ପରେ ପରେ ମୋର ପେଟେ କଳଖିଆ ଖାଇବା ଅଭ୍ୟାସ।

ମାଧବ : (ହସି) ଖାଇବା ଛଡା ପୃଥିବୀରେ ଆଉ କିଛି କାମ ନାହିଁ। ଦିନ ରାତି କେବଳ ଖାଇବା ଖାଇବା।

ଅମର : ଆରେ Retire ହେଲା ପରେ ମଣିଷ ପାଖରେ ଦି'ଟା କାମ ବାକି ରହିଯାଇଥାଏ । ଖାଇବା ଆଉ ମରିବା। ମରିବାଟା ମଣିଷ ହାତରେ ନାହିଁ। ଅଛି ଯାହା ଅଛି ଏଖାଇବା କାମଟା । ତାର ସଦ ବ୍ୟବହାର କରିବା ଉଚିତ।

ମାଧବ : ଠିକ୍ ଅଛି ବସ ଯାହା ଘରେ ଥିବ ଦିଆଯିବ।

ଅମର : ତୋ ଲକ୍ଷ୍ମୀ ଛଡା ଘରେ କ'ଣ ରଖିଥିବୁ ଯେ ଦେବୁ? ସ୍ତ୍ରୀ ଲୋକମାନେ, ତୋ ନାତୁଣୀ ଛଡା ଏଇଠି କିଏ ଅଛି ?

ମାଧବ : ଠିକ ଅଛି ପାଖ ଦୋକାନରୁ କିଛି ମଗେଇ ଦେବା।

ଅମର : ହଁ, ଏୟ୍ ଦୁଇନା ବାତ୍। ମୋହନ ଗୁଡିଆ first class ବରା ଅଳୁଦମ୍ କରିଛି। ଆଉ ବଡିଆ କ୍ଷୀର ସାଗର ବି। ସେଇଥିରୁ କିଲେ ଖଣ୍ଡେ ମଗା।

ମାଧବ : କିଲେ ଖଣ୍ଡେ। ଆରେ ତୋର ସେଇଟା ପେଟ ନା ମୁନିସିପାଲଟିର କମ୍ପୋଷ୍ଟ ? ବଟ, ବଟ।

(ବଟ ଆସିଛି । ୧୮-୧୯ ବର୍ଷର ପିଲା, ବେଶ smart, ଦେଖିଲେ ଚାକର ବୋଲି ଚିହ୍ନି ହବନି। ପିନ୍ଧିଛି Half pant ଓ shirt)

ବଟ : ଚା' ଆଣିବି କେଜେ?

ମାଧବ : ହଁ ଚା' ତ ଆଣିବୁ। ପ୍ରଥମେ ଗଲୁ ମୋହନ ଗୁଡିଆ ଦୋକାନରୁ ଆମ ପାଇଁ ଜଳଖିଆ ନେଇ ଆସିବୁ।

ବଟ : ଆପଣଙ୍କୁ ସେ ଛଣା ଛଣି ଜିନିଷ ଖାଇବାକୁ ଡାକ୍ତର ମନା କରିଛନ୍ତି ପରା !

ଅମର : ଚୁପ୍ । ଚଞ୍ଚଳ ଯାଆ, ସେଠି ଯେମିତି ଭିଡ ଜମିଛି ସବୁ ଜିନିଷ ଶେଷ ହୋଇଯିବ। ତାକୁ କହିବୁ ବରା ସହିତ ଆଳୁଦମ୍ ଦେବ। ଦି'ଚାରି ଗଣ୍ଡା ଲଙ୍କା ବି ଛାଣି ଦେଇଥିବ।

ମାଧବ : ଯା' ଟେବୁଲ ଉପରୁ ପଇସା ନେଇଯିବୁ ।

ବଟ : (ଯାଉ ଯାଉ)ପୁଣି ଯଦି Gas ହୁଏ ମୋତେ କହିବେନି କହିଦେଉଛି । (ବଟ ଭିତରକୁ ଚାଲିଯାଏ ।)

ଅମର : ବେଣୀ ମାମଲତକାର ହେଇଗଲାଣି ।

(ଗୋକୁଳି ବାହାରୁ ଆସି ନମସ୍କାର କରିଛି । ଅମର ଓ ମାଧବ ତାକୁ ପ୍ରତି ନମସ୍କାର କଣାଇଛନ୍ତି ।)

ଗୋକୁଳି : ଆଜ୍ଞା, ନମସ୍କାର ।

ଅମର : ନମସ୍କାର ନମସ୍କାର ।

ମାଧବ : ଆରେ ଗୋକୁଳି ତୁ ତାହେଲେ ଆସିଗଲୁ, ଭଲ ହେଲା - ଏଇଠି କଥା ହେଇଯିବା ।

(ଭିତରୁ ଗୋଟିଏ ବ୍ୟାଗ ଧରି ଆସେ ବଟ)

ବଟ : (ମାଧବବାବୁଙ୍କୁ)ଆପଣଙ୍କ Medicine ଟା ବି ନେଇ ଆସିବି । Prescription ଟା ସାଥିରେନେଇ ଯାଉଛି ।

ମାଧବ : ହଁ ନେଇଯା ।

ଅମର : ସେ ମେଡିସିନ ଫେଡିସିନ୍ ଆଣିଲେ ତୋ ଦାନ୍ତ ଭାଙ୍ଗି ଦେବି କହୁଛି ବଟ । ସିଧା ଯା କଳଖିଆ ଆଣି ଏଇଠି ଦେଇଯା । ତା'ପରେ ଯୁଆଡେ ଯିବାକଥା ଯିବୁ । ଭୋକରେ ମୋର ହଂସାଉଡିଗଲାଣି । ବେଣୀ ନବରଙ୍ଗ ଦେଖେଇ ହେଉଛି । (ବଟ କିଛି ନ କହି ବାହାରକୁ ଚାଲିଗଲା)

ମାଧବ : ଉତ୍କଳ ଚେତନା କଥା ତୁମ ସାଙ୍ଗ ମାନଙ୍କ ସହିତ ଆଲୋଚନା ହେଲା ?

ଗୋକୁଳି : ହଁ-ସମସ୍ତେ, ବିଶେଷତଃ ଅଧ୍ୟାପକ ବନ୍ଧୁମାନେ ଉତ୍କଳ ଚେତନା Idea କୁ ବେଶ ପସନ୍ଦ କଲେ । ସମସ୍ତେ ଏଥିରେ ସହଯୋଗ କରିବେ ।

ଅମର : ଉତ୍କଳ ଚେତନା', ଆରେ ସେଇଟା ପୁଣି କ'ଣ ?

ମାଧବ : ଗୋକୁଳି କହୁଛି ଏଇ ଗାଁରେ ଗୋଟିଏ Complex ଭିତରେ ରହିବ Library, Lending Library, ନୃତ୍ୟ ସଙ୍ଗୀତ ଚିତ୍ରକଳାର ସ୍କୁଲ । ଆମ

ଅଞ୍ଚଳରେ ଯାହା ଯାହା ହସ୍ତଶିଳ୍ପ ତାର ଏକ museum, ମାନେ ଗୋଟେ ସ୍ଥାନରେ ପଶିଗଲେ ପିଲାର ବ୍ୟକ୍ତିତ୍ୱ ବିକାଶରେ ସାହାଯ୍ୟ କରିବ।

ଅମର : ଏତେ ବଡ ବଡ କାମ କରିବାକୁ ଚାହୁଁଛ, ଏଇ ଗାଁରେ ଇଏ କ'ଣ ସମ୍ଭବ ? ଅର୍ଥ କୁଆଡୁ ଆସିବ?

ମାଧବ : ବଡ ବଡ ଆଶା ନକଲେ ବଡ ବଡ କାମ ହେଇ ପାରିବନି ଅମର। College ପାଇଁ ଅର୍ଥ ଆସିଲା କୁଆଡୁ, girls' School ପାଇଁ ଟଙ୍କା କୁଆଡୁ ଆସିଲା ?

ଅମର : ନାଁରେ ବାବା ମୁଁ ପୁଣି ଘର ଘର ବୁଲି ଚାନ୍ଦା ମାଗି ପାରିବିନି।

ମାଧବ : ଦେଖ ଅମର, ତୁ ମୋତେ କଥା ଦେଇଛୁ- ଯେତେ ଯାହା ଅସୁବିଧା ହେଉପଛେ ଆମେ ଏଇ ଗାଁ ପାଇଁ କିଛି କାମ କରିବା..........।

ଅମର : ଆବେ କେତେ କରିବା, Retired ହେଇ ଗାଁରେ ଆମେ ରହିଲା ପରେ ଅନେକ କଲେଣି, ଅନେକ ଦେଲେଣି, ଗୋଟିଏ ଜିନିଷ ନହେଉଣୁ ତୁ ଆଉ ଗୋଟେ କାମ ଆରମ୍ଭ କରି ଦେଉଛୁ।

ମାଧବ : ତୋର ଏଇ ଉତ୍କଳ ଚେତନା ପାଇଁ କାହାକୁ ମାଗିବା ଦରକାର ନାହିଁ। ଗୋକୁଳି ଆଉ ତା' ସାଙ୍ଗମାନେ ସେକଥା କରିବେ। ତୁ ତୋ ସଂପତ୍ତିରୁ କିଛି ଦାନ କରିବୁ........।

ଅମର : ଆବେ ତୋ ଭଳି ମୁଁ ଚିପା ହେଇ ସଂପତ୍ତି ବାଢେଇ ଥିଲେ ଦାନ କରିଥାନ୍ତି। ମୋ ପାଖରେ ଗୋଟେ ପଇସା ରହେନି, ମୁଁ କ'ଣ ଦାନ କରିବି ! ରିଟାୟାର୍ଡ ହେଲାପରେ ଯାହା ଟଙ୍କା ପାଇଥିଲି ସବୁ ଖାଇ ଖାଇ ଉଡେଇ ଦେଇଛି।

ମାଧବ : ତୋ Pension ରୁ ଯାହା ମିଳୁଛି ସେଥିରୁ କିଛି କିଛି ଦାନ କର। ଆଜିକାଲି ରାଜା ଜମିଦାର ନାହାଁନ୍ତି ଯେ ଏ ସବୁ କାମକୁ ପୃଷ୍ଠପୋଷକତା କରିବେ। କ'ଣ କହୁଛୁ ?

ଅମର : ତୁ ପୁଅମାନଙ୍କ ପାଖରେ ନରହି ଏଇଠି କାହିଁକି ରହିଛୁ କହିଲୁ ? ମୋତେ ଖାଲି ହଇରାଣ କରୁଛୁ।

(ବଟ କଳଖିଆ ନେଇ ବାହାରୁ ଆସେ)

| | | |
|---|---|---|
| ଅମର | : | ସାବାସ ବଟକୃଷ୍ଣ। ମୁଁ ଯାହା ଯାହା କହିଥିଲି ନେଇ ଆସିଲୁ ? |
| ବଟ | : | ଆଜ୍ଞା । (ବଟ ଭିତରକୁ ଯାଏ) |
| ଅମର | : | ଆରେ ବ୍ୟାଗଟା ଏଇଠି ରଖିଦେଇ ଯା- । ବଟ,ବଟ। ତୁ ଗୋଟେ ଇଡିଏଟ କୁ ରଖିନ୍ଥୁ ମାଧବ। କଥା ଶୁଣୁନି। |
| ମାଧବ | : | ଆରେ ଏତେ ଅଧର୍ଯ୍ୟ କାହିଁକି , ବସ। ତୋ ପାଇଁତ ଆସିଛି, ଆଣିବନି। |
| ଗୋକୁଳି | : | ମୁଁ ଗୋଟେ କଥା ଭାବୁଛି କେଜେ। ଗୋଟେ ଜାଗାମିଳିଲେ ସେଇଠି ଉତ୍କଳ ଚେତନା ପାଇଁ କାମ ଆରମ୍ଭ କରିଦିଅନ୍ତେ। ଗାଁ ଭିତରେ ପ୍ରଧାନ ଘରର ନିଅଁଣି ଡିହଟା ଖୋଲାପଡିଛି। ତା' ମାଲିକ କେହି ନାହାଁନ୍ତି। |
| ଅମର | : | ହଁ ଠିକ କଥା ସେଇଟାକୁ ମାଡିବସିଲେ ହେବ। |
| ମାଧବ | : | ନା, ଆମେ ଗୋଟେ ଭଲକାମ ଆରମ୍ଭ କରିବାକୁ ଯାଇ ଏମିତି ଗୋଟେ ଜାଗାରେ ଆରମ୍ଭ କରିଲେ ଲୋକେ ଖରାପ ଭାବିପାରନ୍ତି। |
| ଅମର | : | ତୁ ଏମିତି ସତ୍ୟନିଷ୍ଠ ଯୁଧିଷ୍ଠିର ହେଲେ କିଛି ହବନି। |
| ମାଧବ | : | ନା ବଂର କାମ ଅଟକି ଯାଉ। ଆମେ ବୁଡା ବୁଡା ଥାଉ ଥାଉ ଏମିତି କାମକୁ ପ୍ରଶୟ ଦେବାନି। |
| ଅମର | : | ତୁ ପ୍ରଶୟ ଦେ ବା ନଦେ। ଯୋଉ ବରା ବାସ୍ନା ହେଲାଣି ମୁଁ ମୋ ଭୋକକୁ ଆଉ ପ୍ରଶୟ ଦେଇ ପାରିବିନି। |
| | | (ଅମର ଉଠି ଭିତରକୁ ଯାଏ। ବାହାରୁ ବର୍ଷା ଆସେ, ତା ଚେହେରା ଉଦାସ ଜଣାଯାଉ ଥାଏ।) |
| ମାଧବ | : | ଆରେ ମା ବର୍ଷା, ନାଚ ସ୍କୁଲରୁ ଫେରିଲୁ ନା ? |
| ବର୍ଷା | : | ହଁ । (ଭିତରକୁ ଚାଲି ଯାଉଥିଲା) |
| ମାଧବ | : | ଆରେ ଏଠି ଗୋକୁଳି ବସିଛି, ସିଧା ଭିତରକୁ ଚାଲି ଯାଉଛୁ ଯେ,ତୋ ମୁହଁ କାହିଁକି ଶୁଖିଯାଇଛି, କ'ଣ ହେଲା ? |
| | | (ବର୍ଷା ସେମିତି ଠିଆ ହେଇଛି- ତା' ଆଖିରୁ ଲୁହ ଗଡିବାକୁ ଲାଗିଛି।) |

ମାଧବ : କ'ଣ ହେଇଛି ତୋର୍- ନ କହିଲେ କେମିତି ବୁଝିବି କହିଲୁ ?

ବର୍ଷା : ଆଜି ପୁଣି ସେଇ ମଦଦୋକାନ ସାମନାରେ ଠିଆ ହେଇ ସେମାନେ ଆମମାନଙ୍କୁ Comment ମାରିଲେ । ଗାଁ ଭିତରକୁ ସେ ସ୍କୁଲକୁ ଉଠେଇ ନଆଣିଲେ ମୋ ସାଙ୍ଗମାନେ କେହି ସ୍କୁଲକୁ ଆଉ ଯିବୁନି ।

ଗୋକୁଳି : ହଁ ଜେଜେ-ସେଠି ସଂଧ୍ୟା ବେଳକୁ ଯେମିତି ମଦୁଆମାନଙ୍କର ଭିଡ ହେଉଛି ପିଲାମାନେ କେହି Comfortable feel କରୁନାହାନ୍ତି ।

ମାଧବ : ଯୁଗ ସେୟା ହେଇଛି ଗୋକୁଳି-ଦୁଧବାଲା ଦୁଆର ଦୁଆର ବୁଲି ଦୁଧ ବିକୁଛି ଅଥଚ ମଦଦୋକାନରେ ଲାଇନ ଲାଗୁଛି । ହେଲେ ଆମକୁ କିଛି କରିବାକୁ ପଡିବ ।

ଗୋକୁଳି : ଗାଁ ଭିତରେ ଭଲ ଘରଟେ ମିଳିଲେ ଅବା ଉଠେଇ ଆଣନ୍ତେ । କ'ଣ ଆଉ କରିହବ ।

ମାଧବ : ଉତ୍କଳ ଚେତନା ସଂଘର ଘର ଆରମ୍ଭ ହେବ ଆଉ ସେଇଠି କି ନାଚ ସଂଗୀତ ସ୍କୁଲ ଉଠି ଆସିବ ।

ଗୋକୁଳି କିନ୍ତୁ କେମିତି ଜେଜେ....?

ମାଧବ ଗାଁ ମଝିରେ ମୋର ଗୋଟେ ଏକରରୁ ଅଧିକା ଜାଗା ପଡିଛି । ସେଇଠି କାଲିଠୁ କାମ ଆରମ୍ଭ ହେବ ।

ଗୋକୁଳୀ : କିନ୍ତୁ ଏତେ ବଡିଆ ଜାଗାଟା ଆପଣ କ'ଣ ମାଗଣାରେ ଛାଡି ଦେବେ ?

ମାଧବ : ଖାଲି ଛାଡି ଦେବିନି " ଉତ୍କଳ ଚେତନା ସଂଘ ନାଁ ରେ ଦାନ ସୂତ୍ରରେ Resistration ମଧ୍ୟ କରିଦେବି ।

ଗୋକୁଳୀ : କିନ୍ତୁ ଜେଜେ.....!

ମାଧବ : ତୁମେ ତୁମ ବଂଧୁ ମାନଙ୍କୁ କାଲି ଧରି ଆଣ ଗୋକୁଳି, କାଲି ସେଇଠି ଶୁଭାରମ୍ଭ ହେବ ।

ଗୋକୁଳୀ : ଏକଥା ଶୁଣିଲେ ମୋ ବଂଧୁମାନେ ବଡ ଉତ୍ସାହିତ ହେଇଯିବେ ଜେଜେ, ଆପଣ ଦେଖିବେ ଆମେ ସେଠି ନିଶ୍ଚୟ ଗୋଟେ ବର୍ଷ ଭିତରେ ପକ୍କା ଘର ଠିଆ କରିଦେବୁ ।

(ଭିତରୁ ଆସେ ବଟ । ହାତରେ ତା'ର ଜଳଖିଆ

ପ୍ଲେଟ, ତା' ପରେ ଆସନ୍ତି ଅମରେନ୍ଦ୍ର ବାବୁ, ସେ ଗୋଟେ ପ୍ଲେଟରେ ଧରି ଖାଇ ଖାଇ ଆସନ୍ତି ।)

ଅମର : ଏଁ ମୋ ନାତୁଣୀ ବର୍ଷା ବି ଆସିଗଲାଣି । ତା'ପାଇଁ କିଛି ରଖୁଛୁ ନା ନାହିଁ ।

ବଟ : ଆଜ୍ଞା, ଆପଣତ ଚାରି ଜଣଙ୍କର ଚଳୁ କରିଦେଲେଣି ଆଉ ରହିବ କେମିତି ?

ଅମର : ଠିକ ଅଛି ବର୍ଷା, ମୋ ସାଥିରେ ଖାଇବ ।

ମାଧବ : ନାଚ ସ୍କୁଲରୁ ଫେରୁ ଫେରୁ କିଏ ଗୋଟେ Comment କରିଛି ଯେ ତା ଆଖିରୁ ଧାର ଧାର ଲୁହ ଗଡି ଯାଉଛି-ଖାଇବ କ'ଣ ?

ଅମର : Comment କରିଛି-କିଏ ସେ ଅର୍ବାଚିନ ପାଷାଣ୍ଡ । ମେଜର ଅମରେନ୍ଦ୍ର ଚୌଧୁରୀର ବନ୍ଧୁ ମାଧବ ମାମନ୍ତରାୟର ଏକ ମାତ୍ର ନାତୁଣୀକୁ ଆଖି ଉଠେଇ ଚାହିଁଲା । ମୁଁ ବର୍ତ୍ତମାନ ଯାଇ ତା'ର ସେଇ ଆଖି ଦି'ଟାକୁ ଉପାଡି ଅଣିବି । କିଏ ସେ ଅକାଳ କୁଷ୍ମାଣ୍ଡ ।

(ଅମର ହଠାତ୍ ଏମିତି ଗୋଟେ ପାଟି କରିଦିଅନ୍ତି ଯେ ବର୍ଷା ସହିତ ସମସ୍ତେ ହସି ଉଠନ୍ତି । ଅମର ବାବୁ ସୁଯୋଗ ଦେଖି ଗୋଟିଏ ଆଳୁଚପ୍ ବର୍ଷା ମୁହଁରେ ଗଲେଇ ଦିଅନ୍ତି ।)



# (ଭାଗ-୩)

(କ୍ଷେତ୍ର ମୋହନ ବାବୁ ତାଙ୍କ ଡ୍ରଇଁ ରୁମରେ ପଦଚାରଣ କରୁଛନ୍ତି । ସେ ଯେମିତି କାହାକୁ ଅପେକ୍ଷା କରିଛନ୍ତି । କିଛିସମୟପରେ ଗୋଟିଏ ମଧ୍ୟ ବୟସ୍କ ଲୋକ ଆସେ । ଅଯତ୍ନ ବର୍ଦ୍ଧିତ ଦାଢ଼ି ସହିତ ମଇଲା Trouser ପଞ୍ଜାବିର ବେଶ ଦେଖିଲେ ସେ ଯେ ଏକ ମଦ୍ୟପ ଜଣାପଡେ । ସକାଳୁ ସକାଳୁ ମଦ୍ୟପାନ କରିଥିଲେ ବି ସେ ବେଶ Normal ଥିଲା ଭଳି କଥାବାର୍ତ୍ତା କରେ ।)

କ୍ଷେତ୍ର : କ'ଣ ହେଲା ?

ହଟ : ଦେଖି ଆସିଲି ଆଜ୍ଞା । ଚାଲିଛି ।

କ୍ଷେତ୍ର : କ'ଣ ଚାଲିଚି ?

ହଟ : ଯଉକଥା କହୁଥିଲି ସେଇକଥା ।

କ୍ଷେତ୍ର : ଆବେ କ'ଣ ଚାଲିଛି କହନା ସେଇକଥା, ସେଇକଥା ଲଗେଇଛି ।

ହଟ : ଚକ୍ରାନ୍ତ

କ୍ଷେତ୍ର : କ'ଣ ଚକ୍ରାନ୍ତ ?

ହଟ : ଘୋର ଚକ୍ରାନ୍ତ ଆଜ୍ଞା । ଯାହା ଦେଖି ଆସିଲି ଆପଣଙ୍କୁ ବରବାଦ କରିବାକୁ ରୀତିମତ ଗୋଟେ ଯୋଜନା ଚାଲିଛି ।

କ୍ଷେତ୍ର : (ହଠାତ୍ ରାଗିଯାଇ) Shut up ।

ହଟ : ହେଇତ ଆଉ । ଟିକିଏ କଥାରେ ଆପଣ Blood Pressureକୁ ବଢ଼େଇ ଦେବେ ।

କ୍ଷେତ୍ର : ଆବେ କ'ଣ ଚାଲିଛି କହ ।

ହଟ : ଆଜ୍ଞା, ଏ ଗାଁରେ Girl' School କୁ ଆପଣ ମନ୍ତ୍ରୀଙ୍କୁ କୁହାବୋଲା କଲାରୁ Govt. ହାତକୁ ନେଲା । ଲୋକ କହିଲେ ମାଧବ ବାବୁ କଲେ । ଆପଣ ପରିଶ୍ରମ କରି କାମ କରୁଛନ୍ତି ନାଁ ହେଉଛି ମାଧବ ବାବୁଙ୍କର ।

କ୍ଷେତ୍ର ଜାଣିଛି । ବର୍ତ୍ତମାନ କ'ଣ ଦେଖି ଆସିଲୁ କହ ।

ହଟ ବର୍ତ୍ତମାନ ମାଧବବାବୁଙ୍କ ଜାଗା ଉପରେ ପଚାଶ ଖଣ୍ଡେ ପିଲା-କଲେଜ

ଅଧ୍ୟାପକ ମିଶି ଅଳିଆ ସଫା ଚଳେଇଛନ୍ତି । ଗୋଟେ Sign Board ମରା ଗଲାଣି । ଲେଖା ଯାଇଛି "ଉତ୍କଳ ଚେତନା ସଂଘ" ।

କ୍ଷେତ୍ର (ହଠାତ୍ ପୁଣି ରାଗି) ଚୋପା ଚେତନା ସଂଘ ।

ହଟ ହେଇତ ଆଉ, ଡାକ୍ତର ଆପଣଙ୍କୁ ମାନା କରିଛି ମୂଳରୁ ରାଗିବେନି ।

କ୍ଷେତ୍ର ଆବେ ମୋତେ ଆସି ରାଗିବା କଥା ଗୁଡାକ କହୁଛୁ, ରାଗିବିନି ?

ହଟ ଠିକ୍ ଅଛି ଆଜ୍ଞା, ମୁଁ ଆଉ କିଛି କହିବିନି, ମୁଁ ଯାଉଛି ମା' ପୁଣି କୁଆଡେ ପଠାଇବେ ବୋଲି କହୁଥିଲେ ।

କ୍ଷେତ୍ର ଚୋପା, ସକାଳୁ ସକାଳୁ ମୋ ପଇସାରେ ପେଟେ ପି'ଦେଇ ସିଆଡେ କୁଆଡେ ଯିବୁ । ସେ ସଂଘରେ କ'ଣ କ'ଣ କାମ ହେବ ବୋଲି ବୁଝିଆସିଲୁ ।

ହଟ : କ'ଣ କ'ଣ କାମ ହେବ - ଗୋଟେ କାଗଜରେ ଛପା ହେଇ ବଣ୍ଟା ହେଉଛି । କାନ୍ଥରେ ବାଡରେ ମରାଯାଇଛି । ଏଇ ଆପଣଙ୍କ ପାଇଁ ନେଇ ଆସିଛି ନିଆନ୍ତୁ । (ପକେଟରୁ ଖଣ୍ଡେ ଛାପା କାଗଜ ଦିଏ)

କ୍ଷେତ୍ର ଆବେ ସେ ଫାଲତୁ କାଗଜକୁ ମୁଁ ଛୁଇଁବିନି । କ'ଣ ସବୁ ଲେଖା ହୋଇଛି ତୁ ପଢିଦେ....

ହଟ : (କାଗଜରୁ ପଢି) 'ଉତ୍କଳ ଚେତନା ସଂଘ' । ଉଦ୍ଦେଶ୍ୟ - ଏକ: ନିଜ ସଂସ୍କୃତି ସାହିତ୍ୟ ଐତିହ୍ୟ ଓ ପରମ୍ପରା ରକ୍ଷା ପାଇଁ ଜନ ସାଧାରଣଙ୍କୁ ଚେତନା ଯୋଗାଇବ ।

କ୍ଷେତ୍ର ତା'ପରେ ?

ହଟ (ସେମିତି ପଢି) ଦୁଇ, ନିରକ୍ଷରତା ଦୂରୀକରଣ ଏବଂ ଶିକ୍ଷାର ପ୍ରସାର- ଗରିବ ଛାତ୍ର ଛାତ୍ରୀମାନଙ୍କୁ Lending Library ର ସୁବିଧା ଓ Coaching ପ୍ରଦାନ ।

କ୍ଷେତ୍ର : ତା'ପରେ.......?

ହଟ : ତିନି, ଲୋପ ପାଇଯାଉଥିବା ଲୋକ ନୃତ୍ୟ ସଙ୍ଗୀତ, ଲୋକକଳାର ପୁନରୁଦ୍ଧାର ଓ ପ୍ରୋତ୍ସାହନ । ଚାରି ଛୋଟ ବଡ ସବୁ ପିଲାଙ୍କୁ.......।

କ୍ଷେତ୍ର : ଥାଉ ଥାଉ ଆଉ ପଢିବା ଦରକାର ନାହିଁ ।

ହଟ : ହେଇତ ଆଉ - ତଳେ କେମିତି କେମିତି କ'ଣ ସବୁ building ହବ ତାର Plan ଦିଆଯାଇଛି ।

କ୍ଷେତ୍ର ଶଳା Retired Engineer ତ ସବୁ କଥାରେ Plan ଦେଖେଇ ହେଉଛି ।

ହଟ		କି, ଆପଣ କୋଉ କମ କି ? ବିଶିଷ୍ଟ Advocate କୁ ବିଚକ୍ଷଣ ନେତା ଆପଣ କିଛି ଦେଖେଇ ଦିଅନ୍ତୁ ।

କ୍ଷେତ୍ର	:	ରହ ଏ କିଛି ଦିନ ଭିତରେ ଦେଖେଇ ଦଉଛି ।

ହଟ	:	ଯାହା ଦେଖେଇବା କଥା ଚଞ୍ଚଳ ଦେଖାନ୍ତୁ । ଏ ଅଞ୍ଚଳ ଲୋକମାନେ ଯାହା କୁହାବୋଲା ହେଲେଣି-ମାଧବ ସାମନ୍ତରାୟକୁ ଏଥର M.L.A କରାଇଦେବା ବିଚିତ୍ର ନୁହେଁ ।

କ୍ଷେତ୍ର	:	(ପୁଣି ବିଗିଡି ଯାଇ) ଚୋପ୍ । ମୋ ସାମନାରେ ମୋ ଶତ୍ରୁଟାକୁ ପ୍ରଶଂସା କରିବୁନି କହିଦଉଛି ।

ହଟ	:	ହେଇତ ଆଉ ଟିକିଏ କଥାରେ ବିଗିଡି ଯିବେ । ଶତ୍ରୁ ବଷୟରେ ସବୁକଥା ଜାଣିଲେ ସିନା ଆକ୍ରମଣ କରିବାକୁ ସୁବିଧା ହେବ ।

କ୍ଷେତ୍ର	:	ଏ ମାଧବ, ପୁଅମାନଙ୍କ ପାଖରେ ନରହି ଗାଁରେ କାହିଁକି ପଡିରହିଛି! ଶଳାଟିର ଉଦେଶ୍ୟ କ'ଣ ?

ହଟ	:	ଆପଣଙ୍କ ମୂଳ ଉତ୍ପାଟନ ।

କ୍ଷେତ୍ର	:	(ପୁଣି ବିଗିଡି ଯାଇ) ଛେନା ଉତ୍ପାଟନ । ମୁଁ ବି ତାକୁ ତିନି ପାଂଜିରୁ ଉଛନ୍ନ କରିଦେବି ।

ହଟ	:	ହେଇତଥାଉ । ଆପଣ ପାରିବେନି ବୋଲି କିଏ କହୁଛି । କରିବେ କରିବେ ବୋଲି ଡେରି କରୁଛନ୍ତି । ଓଟ ନଉଁ ନଉଁ ଛେଳି ପାର ହେଇଯାଉଛି ।

କ୍ଷେତ୍ର	:	ତୁ ଯା' ସେଠି କ'ଣ କ'ଣ ସୁବ ଚାଲିଛି ମୋତେ ଖବର ଦେ ।

ହଟ	:	ଯେତିକି ଖବର ଆଣିଛି ପ୍ରଥମେ ଶୁଣନ୍ତୁ ।

କ୍ଷେତ୍ର	:	କ'ଣ ?

ହଟ	:	ଗାଁ ବାଲା ସବୁ କଥାବାର୍ତ୍ତା ହେଉଛନ୍ତି ଆପଣଙ୍କ ମଦ ଦୋକାନଟା ଉଠେଇ ଦେବାକୁ Collector ଙ୍କ ପାଖରେ ଦରଖାସ୍ତ ଦିଆଯିବ ।

କ୍ଷେତ୍ର	:	ମାଗଣା ପଡିଛି । Advocate କ୍ଷେତ୍ରମୋହନ ଏଇ ବଉଦପୁରୁଆଙ୍କୁ ନାଲିକୋଠା ଦେଖେଇ ଦେବ କହିଦେବୁ ।

ହଟ	:	ହଁ ସେଗୁଡାକୁ ସଯ୍ୟ କରିବାକୁ ପଡିବ ଆଜ୍ଞା । ଆଉ ଗୋଟେ ଖବର ଶୁଣିଲି ଯେ ଗୋକୁଳି ଟୋକାଟା ମଦଦୋକାନ ସାମନାରେ ପକେଟିଂ ଆରମ୍ଭ କରିବ ।

| | | |
|---|---|---|
| କ୍ଷେତ୍ର | : | ତୁ ଶଳା ହଟ ହେଉଛୁ ଗୋଟେ ବାଜେ ଲୋକ । କଥା ଗୁଡାକ ଏକାବେଳେକେ ନକହି ଥର ଥର କରି କହୁଛୁ । |
| ହଟ | : | କ'ଣ କରିବି ଆଜ୍ଞା, ପଦ ପଦ କରି ଖବର ଶୁଣାଇବା ହେଉଛି ଆମ ଖାନଦାନି ଅଭ୍ୟାସ । |
| କ୍ଷେତ୍ର | : | ମାନେ ? |
| ହଟ | : | ମାନେ ମଦ ପିଇବା ଭଳି ଖବ ଶୁଣିବା ହେଉଛି ବିଶିଷ୍ଟ ଓଡିଆମାନଙ୍କ ଗୋଟେ ଖାନଦାନି ସଉକ । ଧୀରେ ଧୀରେ ଢୋକେ ଢୋକେ ପିଇଲେ ଯେମିତି ଜମେଇକରି ନିଶାଧରେ, କଥାଟାକୁ ଧୀରେ ଧୀରେ କହିଲେ ସେମିତି ଶୁଣିବା ଲୋକର ମୁଣ୍ଡକୁ ଧରେ । |
| କ୍ଷେତ୍ର | : | ଏଁ ସେଇଥି ପାଇଁ ତୁ ଖବର ଗୁଡାକ ଧୀରେ ଧୀରେ କହୁଛୁ । |
| ହଟ | : | ଆପଣ ନିଜ ଲୋକ ବୋଲି କୂଳ ବେଉସାରେ Trick ଟା କହିଦେଲି ଆଜ୍ଞା, ଆପଣ ଯେମିତି ଏ ଟ୍ରିକ୍‌ଟା କାହା ଆଗରେ ଖୋଲି ନଦିଅନ୍ତି । |
| କ୍ଷେତ୍ର | : | ହୁଁ କ'ଣ କହୁଥିଲୁ ଗୋକୁଳି ପିକେଟିଂ କରିବ ? |
| ହଟ | : | ହୁଁ ଗାନ୍ଧି ଜୟନ୍ତୀ ଦିନ ବୋଲି ଠିକ ହେଇଯାଇଛି । |
| କ୍ଷେତ୍ର | : | ଚୋପ୍, ତାଙ୍କୁ ଭଣ୍ଡୁର କରିବାକୁ କ'ଣ ଉପାୟ୍ କହ । |
| ହଟ | : | ମଦୁଆଙ୍କୁ ଲଗେଇ ନିର୍ଘୁମ ମାଡ ଲଗେଇ ଦେବା ଆଜ୍ଞା । |
| କ୍ଷେତ୍ର | : | ଫୌଜଦାରୀ କେସ୍ କରି ମୋତେ ହଇରାଣ କରିବାକୁ ବୁଦ୍ଧିବାହାର କରିଛୁ ? |
| ହଟ | : | ସକାଳୁ ଯାହା ମୁନ୍ଦେ ପଡିଥିଲା ସବୁ ପାଣି ଫାଟି ଗଲାଣି, ଆଜ୍ଞା । ତେଣୁ ଥଣ୍ଡା ମୁଣ୍ଡରେ ଠିକ୍ ବୁଦ୍ଧି ଗୁଡାକ ଜୁଟୁନି । |
| କ୍ଷେତ୍ର | : | Rascal, ପି' ବାକୁ ଫିକର ବାହାର କରୁଛୁ ? |
| ହଟ | : | କ'ଣ କରିବି ଆଜ୍ଞା, ପିଇ ପିଇ Brain ଟା ଏମିତି ଲାଞ୍ଜୁଆ ହେଇଗଲାଣି ଯେ-ନ ପିଇଲେ ମୋଟେ କାମ କରୁନି । ମୁନ୍ଦେ ପଡ଼ିଗଲେ ଦେଖିବେ ସଂଗେ ସଂଗେ ବୁଦ୍ଧି ବାହାରି ପଡ଼ିବ । |
| କ୍ଷେତ୍ର | | ଠିକ୍ ଅଛି ଚିଠିଖଣ୍ଡେ ଲେଖି ଦେଉଛି, ଦୋକାନରୁ ନେଇଯିବୁ, ସଂଧ୍ୟାବେଳକୁ କ'ଣ କରାଯିବ କହିବୁ । (ଚିଠି ଲେଖନ୍ତି । ଅଟକି ଯାଆନ୍ତି) |

ଏମିତି ବୁଦ୍ଧି ବାହାର କରିବୁ ଯେମିତି ମାଧବ ନାଁ ଶୁଣିଲେ ଲୋକ ବିଗିଡ଼ି ଯିବେ ।

ହଟ : ଚିଠିଟା ପ୍ରଥମେ ଲେଖନ୍ତୁ ।

କ୍ଷେତ୍ର : ତୋ କଥା ଅନୁସାରେ ଫଂରେନ୍ ମାଲ ଦେବାକୁ ଲେଖିଛି । ସଂଧ୍ୟା ବେଳକୁ ଯେମିତି...... ।

ହଟ : ସତକୁ ସତ ଫଂରେନ୍ ମାଲ । ଆଜି କାହା ମୁଁହ ଦେଖି ଉଠିଥିଲି କେଜାଣି ।

କ୍ଷେତ୍ର : କ'ଣ ହେଲା ? (ଚିଠିଟା ଧମିନେଇ ଚାଲିଯାଏ । ପୁଣି ଫେରିଆସେ ।)

ହଟ : ଫଂରେନ୍ ମାଲ ଚିଠିଟା ଧରୁ ଧରୁ ଗୋଟେ first class ଖଳ ବୁଦ୍ଧିର ଅଙ୍କୁରୋଦ୍‌ଗମ୍ ହେଇ ଗଲାଣି ଆଜ୍ଞା ।

କ୍ଷେତ୍ର : କ'ଣ ?

ହଟ : ମାଧବ ବାବୁଙ୍କୁ ଯବତ କରିବାକୁ ଆପଣ ଚାହୁଁଛନ୍ତି ନା'? ମାଧବବାବୁଙ୍କ ବଡ ପୁଅ - ମାନେ ଅପଣଙ୍କ ଜ୍ୱାଇଁ ପ୍ରଫୁଲ୍ଲ ବାବୁଙ୍କୁ ଚିଠି ଲେଖିଦିଅନ୍ତୁ, ତାଙ୍କ ବାପା ପାଗଳ ହେଇଗଲେଣି..... ।

କ୍ଷେତ୍ର : ମାନେ ? (ହଟ କ୍ଷେତ୍ର ମୋହନଙ୍କ କାନ ପାଖରେ ଫୁସ ଫୁସ ହୋଇ କ'ଣ କହେ, କ୍ଷେତ୍ର ମୋହନ ଅତ୍ୟନ୍ତ ଖୁସି ହୁଅନ୍ତି ।)

ତୁ ଠିକ୍ କହିଛୁ । ଏ ଯାଙ୍କେ ଯାଙ୍କେ ଲେଖୁଛି ।

(କ୍ଷେତ୍ର ମୋହନ ଶୂନ୍ୟରେ ଚିଠି ଲେଖିବା ଭଙ୍ଗୀ କରନ୍ତି ତାଙ୍କ କଣ୍ଠରୁ ଚିଠିର ଭାଷା ଶୁଣାଯାଏ । ହଟ ମଝିରେ ମଝିରେ ହୁଁ ହୁଁ କରୁଥାଏ । ମଝିରେ ଚମ୍ପଟ ମାରେ)

କଲ୍ୟାଣୀୟ ପ୍ରଫୁଲ ଜାଣିବ । ମୋର କଲ୍ୟାଣ ନେବ । ଲେଖିବାର ତାତ୍ପର୍ଯ୍ୟ ଏହିକି ଯେ ତୁମ ବାପାଙ୍କ ମୁଣ୍ଡକୁ ଆମ ଗ୍ରାମର ଗୋକୁଳି ବୋଲି ଗୋଟେ Thirdgrade ଟୋକା ଖାଇବାକୁ ବସିଲାଣି । ତୁମ ବାପାଙ୍କର ସରଳ ବିଶ୍ୱାସର ସୁଯୋଗ ନେଇ ସେ ତୁମ ସଂପତ୍ତିକୁ ହାତେଇବାକୁ ଲାଗିଲାଣି । ଚଞ୍ଚଳ ଗାଁରେ ପହଞ୍ଚି ତୁମ ସଂପତ୍ତିକୁ ରକ୍ଷାକରିବା ପାଇଁ ବ୍ୟବସ୍ଥା ନକଲେ ସବୁ ଛାରଖାର ହେଇଯିବ । ଆବେ ହଟ ଆଉ କ'ଣ ଲେଖିବି ? ଆବେ ହଟ ଚଂପଟ ଦେଲୁ । ଚିଠି ପକେଇବ କିଏ ? ହଟ, ହଟ



## ଭାଗ-୪

(ମାଧବବାବୁଙ୍କ ଡ୍ରଇଁରୁମ । ଅମର ଓ ମାଧବ ଚେସ ଖେଳୁଛନ୍ତି । ଅମର ବାବୁ ଗୋଟିଏ ଚାଲ ଚଳାଇ ଖୁସିରେ ଯେମିତି ଆତ୍ମହରା ।)

ଅମର ହଁ, ଏଥର ଚାଲ ମାଧବ । ତୋ ମିନିଷ୍ଟର କୁ ସଂଭାଳ । ଓଃ ଏତେ ଡେରି- It is too late.

ମାଧବ : ରହ ଏମିତି ପାଟି କରୁଛୁ କାହିଁକି ?

ଅମର : ସବୁଦିନ ତୁ ଜିତିଯିବୁ । ଆଜି ମୋ ପାଳି ପଡିଛି । ପାଟିକରି କଂପେଇବି । (ମାଧବ ଗୋଟି ଚଳାନ୍ତି) ଏଇଟା ଚଳେଇଲୁ ତ ? ଭଲକରି ଭାବି ଦେଖ ତୋ ମିନିଷ୍ଟର ଚାଲିଯିବ । (ଅମର ଗୋଟି ଚଳାନ୍ତି)

ମାଧବ : ଆରେ ଏ ହେଉଛି ଭାରତୀୟ ଗଣତନ୍ତ୍ର । ବୋଫର୍ସ, ହାୱାଲା, ସାର, ଚିନି ଗୋଖାଦ୍ୟ ଯାହା ଦୁର୍ନୀତି କଲେବି ମିନିଷ୍ଟର ର କିଛି ହୁଏନି । ଏଇ ଦେଖ ମୋ ମିନିଷ୍ଟର କେମିତି ଖସିଯାଉଛି ।

ଅମର : ମିନିଷ୍ଟରକୁ ବଞ୍ଚେଇ ଦେଲୁ ଭଲ କଲୁ କିନ୍ତୁ ତୋ ରାଜାକୁ ସମ୍ଭାଳ... ଚେକ । (ଖୁସିରେ ଗୀତିନାଟ୍ୟ ସ୍ୱରରେ ଗୀତ ଗାଇ ଟେବୁଲ ଉପରେ ବାଜା ବଜାଇବାକୁ ଲାଗନ୍ତି ।)

ଆରେ ଆରେ ମାଧବ ତୁ ଆଜି ଯିବୁ କାହିଁରେ, ଏମିତି ଖଞ୍ଜିଛି ବାଣ ନ ରହିବୁ ମହୀରେ । ଆରେ ଆରେ ମାଧବତୁ.......।

ମଧବ : (ଗୋଟି ଚଳାଇ ଯେମିତି ଗୀତିନାଟ୍ୟ ସ୍ୱରରେ) ବନ୍ଧୁବର ଅମର ବାବୁ ସମ୍ଭାଳ ଏଥର ନିଜ ଘରକୁ,

ଚଳାଇଛି ମୋର ଘୋଡା ସବାର
ଘୁଞ୍ଚିବାର ନାହିଁ ଆଉ ଏବାର,
ପାରୁ ଯଦି ଏବେ ବଞ୍ଚାଅ ନିଜକୁ
ନହେଲେ ବୁଡିଲା ସଂସାର ତୋର ।

(ବର୍ଷା ବାହାରୁ ଆସିଛି, ଜେଜେବାବାଙ୍କର ଗୀତ ଶୁଣି ସେ ଅଟକି ଯାଇଛି)

ବର୍ଷା : ବାଃ,

ଅମର : ଆସିଲାଣି ନାତୁଣୀ ତୋର
ଖେଳ ଭାଙ୍ଗିଦେବା ଏବେ ସତ୍ୱର,
ପେଟ ଜଳିଲାଣି କରନାହିଁ ଡେରି
ଜଳପାନ ପାଇଁ ବ୍ୟବସ୍ଥା କର ।
ଆସିଲାଣି ନାତୁଣୀ ତୋର ।

ବର୍ଷା : (ଗୀତ ସ୍ୱରରେ ସେବି ଜବାବ ଦେଇଛି)
ଆଗେ ଶୁଣ ଜେଜେ ଖୁସି ସମ୍ବାଦ
ବମ୍ବେରୁ ଖୁଡୀ ଲେଖିଛନ୍ତି ସନ୍ଦେଶ,
ଆସିବେ ଏ ଗ୍ରାମେ ଦାଦାଙ୍କ ସହିତ
ଓଡିଆରେ ଲେଖିଛନ୍ତି ସେହିତ ।

ଅମର : (ଗୀତ ସ୍ୱର ବଦଳାଇ ପୁରୋହିତ ବିବାହ ସମୟରେ ଶ୍ଳୋକ ପାଠ କରିବା ଢଙ୍ଗରେ....)
ଆରେ ତୋ ସାନ ଖୁଡି ହେଉଛି ମରାଠି ଝିଅ ।
ସେ ଏତେ ଶ୍ରୀଘ୍ର ଓଡିଆ ଶିଖିଲା କେମିତି ।

ବର୍ଷା : (ସେଇ ଶ୍ଳୋକ ପାଠ ଭଳି) ବାଃରେ ସେ ଜଣେ ଅଧ୍ୟାପିକା , ପୁଣି ଭାଷା ବିଜ୍ଞାନରେ ଡକ୍ଟ୍ରେଟ୍ କରିଛନ୍ତି । ଓଡ଼ିଆ ଶିଖିପାରିବେନି । ହେଇ ଦେଖ ତାଙ୍କ ହାତ ଲେଖା ଚିଠି । (ବର୍ଷା ଚିଠିଟି ମାଧବ ବାବୁଙ୍କୁ ବଢେଇ ଦେଇଛି)

ମାଧବ : ଆରେ ସତେତ, ଓଡିଆରେ ଲେଖିଛି । ପଢ଼ିଲୁ ମା ।

| | | |
|---|---|---|
| ବର୍ଷା | : | (ଚିଠି ପଢିଛି) ମୋର ପ୍ରିୟ ଝିଆରୀ ବର୍ଷା, ମୋର ଅନ୍ତରିକ ଶୁଭେଚ୍ଛା ନେବ । ଆମେ ଆସନ୍ତା ମାସରେ ଗୁରୁଜନମାନଙ୍କର ଆଶୀର୍ବାଦ ପାଇଁ ଗାଁକୁ ଯିବୁ । ତୁମେ ମୋତେ ଓଡିଆ ଘରର ରୋଷେଇ ଶିଖେଇ ଦେବ ଆଉ ଓଡିଶାର ସବୁ ଭଲଯାଗା ଦେଖେଇ ଦେବ । ମୁଁ ତୁମ ଦାଦାଙ୍କ ପାଖରୁ ଓଡିଆ ଶିକ୍ଷାକରୁଛି । ମୋର ଅକ୍ଷର ସୁନ୍ଦର ହେଉନିବୋଲି ଥଟ୍ଟା କରିବନି । ଇତି ତୁମର ଖୁଡୀ - ରାଜଶ୍ରୀ (ଚିଠି ପଢା ଶେଷ ହେଇଛି) ଏଇଟା ଗୋଟେ ଭଲ ଖବର ନୁହେଁ କେକେ । |
| ଅମର | : | (ଗୀତ ସ୍ୱରରେ) ହଁ ଏଇଟା ଗୋଟେ firstclass ଖବର । ନବ ବିବାହିତ ପୁଅ ବୋହୂ ଘରେ ପାଦଦେବେ, ବଢିଆ ଖାଇବା ପିଇବାକୁ ହେବ । |
| ମାଧବ | : | ଆରେ ତୋ ପାଇଁ ସିନା ଭଲ ଖବର ହେଲେ ମୋ ନାତୁଣୀ ବର୍ଷା ପାଇଁ ଏଇଟା ବିପଜ୍ଜନକ ଖବର । |
| ବର୍ଷା | : | କାହିଁକି ? |
| ମାଧବ | : | ତୁଚ ହୁଣ୍ଡିଟା ଆଳୁଟିଏ ସିଜେଇ ଜାଣିନୁ, ତୋର ମରାଠି ଖୁଡୀକୁ ଓଡ଼ିଆ ଘରର ରୋଷେଇ ଶିଖେଇବୁ କେମିତି ? ତୁ ଓଡ଼ିଆ ଘରର ବଦନାମ କରିବୁ ଯାହା । |
| ବର୍ଷା | : | ଏଇ ମାସେ ଭିତରେ ଶିଖିବି, ଆଉ ତୁମେ ଦେଖିବ ସାନଖୁଡୀକୁ ଟେରା କରେଇ ଦେବି ? |
| ମାଧବ | : | ଓଡ଼ିଆ ତିନ୍ତିଲେ ଘର ଛପର କରେ, ସେଇକଥା ତାହେଲେ ତୁ ପ୍ରମାଣ କରିଦେବୁ । |
| ବର୍ଷା | : | (କୃତ୍ରିମ କ୍ରୋଧ ପ୍ରକାଶ କରି) କଲେ କରିବି । ସେଥିରେ ତୁମର କ'ଣ ଯାଉଛି । (ବର୍ଷା ଭିତରକୁ ଚାଲିଗଲା) |
| ଅମର | : | ଆରେ ଆରେ ତୁ ଏମତି ତାକୁ ବିଗିଡେଇ ଦେଲୁ କାହିଁକି ? ବର୍ଷା - ମା ବର୍ଷା, ନା ତୋ ଦ୍ୱାରା କିଛି ହବନି ମାଧବ ମୁଁ ଭିତରକୁ ଯାଇ ଦେଖେ । ରୋଷେଇ ଘରେ ତୋ ନାତୁଣୀ କ'ଣ ରଖିଛି । ମୋର ପେଟ ଜଳିଲାଣି । (ଅମର ବର୍ଷା ଯିବା ବାଟରେ ଚାଲିଯାଏ) |

(ବାହାରୁ ଆସେ ଗୋକୁଳି)

ମାଧବ : ଆରେ ଗୋକୁଳି, ଆସ ତୋତେ ମୁଁ ଅପେକ୍ଷା କରିଥିଲି ।

ଗୋକୁଳି : ଆପଣ ଏଇ ଦିପହର ଓଡ଼ିଆ ସମ୍ବାଦ ଶୁଣିଲେଣି କେଜେ ।

ମାଧବ : କ'ଣ ହେଇଛି ?

ଗୋକୁଳି : ଆମର ଏଇଠି ଯୋଉ ପର୍ବେ ଚାଲିଥିଲା ସରକାର ଏଇଠି ଇସ୍ପାତ କାରଖାନା କରିବେ ବୋଲି ନୀତିଗତ ଭାବରେ ନିଷ୍ପତ୍ତି ନେଇଛନ୍ତି ।

ମାଧବ : ସତେନା କ'ଣ ?

ଗୋକୁଳି : ସଂଧ୍ୟା ବେଳେ news ରେ ଶୁଣି ଜାଣିବେ ।

ମାଧବ : ଯାହା ହେଉ ଏତେ ଦିନପରେ ଓଡ଼ିଶା ଉପରେ ଆଖି ପଡ଼ିଲା ।

ଗୋକୁଳି : ଏଥର ଏ ଅଞ୍ଚଳର ରୂପରେଖ ବଦଳିଯିବ କେଜେ ।

ମାଧବ : ସେ ଯାହା ବଦଳୁ ନବଦଳୁ କିଛି ଲୋକଙ୍କୁ କର୍ମ ସଂସ୍ଥାନ ଯୁଟିଯିବ ।

(ବାହାରୁ ଗୋଟିଏ ଭିକାରୀର ଡାକ ଶୁଣାଯାଏ । ପରେ ପରେ ତା କଣ୍ଠରୁ ଓଡ଼ିଆ ଭଜନ 'ସବୁଥିରୁ ବଞ୍ଚିତ କରି' ଶୁଣାଯାଏ ।)

ଭିକାରୀ : (ଅନ୍ତରାଳରୁ) ଭିକ ଗଣ୍ଡେ ମିଳୁ ମା...ମା.... ।

(ଭିକାରୀ ଖଞ୍ଜଣି ବଜାଇ ଗୀତ ଗାଏ ।)

ମାଧବ : ବାଃ, କିଏ ଲୋକଟି, ଭଲ ଗାଉଛି ।

ଗୋକୁଳି : ଅନ୍ଧ ଓସ୍ତାତ କଣ୍ଠ ଭଳି ଶୁଣାଯାଉଛି (ବାହାରକୁ ଦେଖି)ହଁ ତା'ଛଡ଼ା ଏତେ ସୁନ୍ଦର ଖଞ୍ଜଣି କିଏ ବଜେଇ ପାରିବ । କୁସୁମପୁର ଅନ୍ଧ ଓସ୍ତାତ ।

ମାଧବ : ଆଚ୍ଛା ଆଚ୍ଛା ଯାଙ୍କ କଥା ମୋତେ ଜଣେ କିଏ କହୁଥିଲା । ତାକୁ ଯାଇ ଡାକଲୁ ଗୋକୁଳି । ଶୁଣିଛି ବିଚରାଟି ବଡ ହଇରାଣରେ ଚଳୁଛି ।

(ଗୋକୁଳି ଭିତରକୁ ଯାଏ । ଅନ୍ଧର ଗୀତ କିଛି ସମୟ ପାଇଁ ବନ୍ଦ ହୁଏ । ପରେ ଗୋକୁଳି ସହିତ ଅନ୍ଧ ଭିକାରୀ ବୁଢାଟି ପ୍ରବେଶ କରେ ।)

ମାଧବ : ତାଙ୍କୁ ସେଇଠି ବସା ।

ଭିକାରୀ : ଜୁହାର ହଜୁର ।

ଗୋକୁଳି : ଏଇଠି ଏଇ ଚୌକିରେ ବସନ୍ତୁ ।

(ଅନ୍ଧ ଚୌକିରେ ହାତମାରି ବସିବାକୁ ମନା କରେ)

ଭିକାରୀ : ନାଇଁ ବାବୁ, ମୁଁ ତଳେ ବସିବି। ମୁଁ କେତେକର ଲୋକ ଯେ ଚୌକି ଉପରେ ବସିବି।

ମାଧବ : ବସନ୍ତୁ କିଛି ଅସୁବିଧା ନାହିଁ। ଆପଣ କିଛି କମ ଲୋକନୁହନ୍ତି। ଏ ଅଞ୍ଚଳର ଜଣେ ବଡ କଳାକାର। ଓସ୍ତାଦ ବୋଲି ସମସ୍ତେ ଜାଣନ୍ତି।

(ଏଇ କଥା ପଦକରେ ଯେମିତି ଭିକାରୀକୁ କୋଟିସୁବର୍ଣ୍ଣ ମିଳିଯାଏ। ତ' ଓଠ ଥରି ଉଠେ ଆଖିରେ ଲୁହ ଜମିଯାଏ। ଗୋକୁଳି ତାକୁ ନେଇ ଚୌକିରେ ବସେଇ ଦିଏ।)

ଭିକାରୀ : ବାବୁ, ଏ ଅମୃତ ବାଣୀ-ସନାତନ ବାବୁଙ୍କ ପୁଅଙ୍କର ନା ?

ଗୋକୁଳି : ହଁ ମାଧବ ବାବୁ କହୁଛନ୍ତି। ଆପଣ ତା'ହେଲେ ତାଙ୍କୁ ଆଗରୁ ଜାଣିଛନ୍ତି।

ଭିକାରୀ : ନା' ବାବୁ ସେତ ବାହାରେ ଚାକିରୀ କରି ରହିଲେ, ଯାହା ତାଙ୍କ କଥା ଶୁଣିଛି। ହେଲେ ତାଙ୍କ ବାପା ସନାତନ ବାବୁଙ୍କୁ ଭଲଭାବରେ ଜାଣିଛି। ସେ ଦେବତା ସମାନ ଲୋକ ଆଜ୍ଞା, ଏ ଗାଁର ପିଲାମାନଙ୍କୁ ମୁଁ କୀର୍ତ୍ତନ ଶିଖାଉ ଥିଲି। କାହାକୁ କିଛି ଦେବାକୁ ପଡୁ ନଥିଲା। ମୋ ଖାଇବା ପିଇବା କଥା ସବୁ ସେ ବୁଝୁଥିଲେ।

(ହାତ ଯୋଡି ଶୂନ୍ୟକୁ ନମସ୍କାର ମାରି)

ତାଙ୍କରି ଯୋଗୁ ଏ ଗାଁରେ ଫି ବର୍ଷ ଦୋଳକୁ ବାଦୀ କୀର୍ତ୍ତନ, ବାଦୀ ପାଲା, ବାଦୀ ଦଣ୍ଡ ଦଶଦିନ ଯାଏ ଚାଲୁଥିଲା। ଅଞ୍ଚଳ ଯାକ ଲୋକ ଏଇ ଗାଁରେ ଜମୁଥିଲେ। ମୋ ଶିଷ୍ୟମାନେ ଗାଉଣା ବାଜଣାରେ ଭଲ କରିବାଦେଖି ଛାତି କୁଣ୍ଢେମୋଟ ହେଇଯାଉଥିଲା ସନାତନ ବାବୁଙ୍କର।

ମାଧବ : ବର୍ତ୍ତମାନ କେଉଁଠି ଶିଖାଉଛନ୍ତି।

ଭିକାରୀ : ବର୍ତ୍ତମାନ ଲୋକଙ୍କର ଶିଖିବାକୁ ମନ କାହିଁ ଯେ ଶିଖାଇବି ? ଦିନରାତି କଳଗାଉଣାରୁ ହିନ୍ଦି ଫିଲିମ୍‌ର ଗୀତ ବାଜୁଛି। ଓଡିଆ ରାଗ ରାଗିଣୀକୁ କେହି ବାସିରେ ପଚାରୁ ନାହାଁନ୍ତି।

ମାଧବ : କେତେବର୍ଷ ହେଲା ଏସବୁ ଛାଡି ଦେଲେଣି ।

ଭିକାରୀ : ଆମ ଓଡଆ ଗୀତର ପଢି, ଛାନ୍ଦ, ଚମ୍ପୁର ରସ ଯିଏ ଥରେ ଚାଖିଛି ତାକୁ କ'ଣ କେବେ ଛାଡି ପାରିବ ବାବୁ । ବୁଡା ହେଲିଣି ଏବେବି କହିଲେ ସୁବ ଗାଇ ଦେଇ ପାରିବି । ପଖଉଜ ମୃଦଙ୍ଗ, ବଂଇଶି, ଘୁଡିକି ସବୁ କିଛି ବେଜେଇ ଦେବି । କିନ୍ତୁ ଶୁଣିବ କିଏ ? ନିଜ ଜିନିଷତ ଏବେକୁ ସମସ୍ତିଙ୍କି ଗନ୍ଧଉଛି । ତେହିଁକି ଯାହାବି ଥିଲା ବର୍ତ୍ତମାନକୁ ଟେପ୍, ରେଡିଓ , ଟିଭି ଆସି ସବୁଶେଷ କରିଦେଲା । ଆମମାନଙ୍କୁ ଦଣ୍ଡରେ ଠିଆ କରାଇ ଦେଲା ହଜୁର୍, ନହେଲେ ଦିନରାତି ଲୋକ ଯାହାର ପାଦ ପୂଜା କରୁଥିଲେ ସେ ଭିକ ଗଣ୍ଡାକ ପାଇଁ ଏମତି ବାର ଦୁଆର ବୁଲଥାନ୍ତା । (ଭିକାରୀ କଣ୍ଠ ରୁଦ୍ଧ ହୋଇଯାଏ)

ମାଧବ : ଆଚ୍ଛା ତୁମକୁ ସୁବିଧା ଯୋଗାଇ ଦେଲେ ପୁଣି ଆରମ୍ଭ କରିପାରିବ ତ ?

ଭିକାରୀ : ପାରିବି ଆଜ୍ଞା, ହେଲେ ମୁଁ ଆଉ ଶିଖେଇବିନି ବୋଲି ଠିକ୍ କରିଛି ।

ମାଧବ : କାହିଁକି, ଅସୁବିଧା କ'ଣ ?

ଭିକାରୀ : ଆପଣ ବୁଝିବା ଲୋକ ବୋଲି ଏଇଠି ବସେଇ ଏତେ କଥା କହୁଛନ୍ତି । ହେଲେ ଆମ ଲୋକ ଏ ସବୁ ବିଦ୍ୟାରେ ଲାଗିଥିବା ଲୋକଙ୍କୁ ବଡ ହୀନ ଚକ୍ଷୁରେ ଦେଖନ୍ତି ବାବୁ ।

ମାଧବ : ଲୋକ ଅବଶ୍ୟ ଏସବୁ ବୁଝିବାରେ ଭୁଲ କରୁଛନ୍ତି । କିନ୍ତୁ ଗାଁ ଗହଳିରେ ପ୍ରଚଳିତ ଏ ସବୁ ଲୋକ ସଙ୍ଗୀତ ଲୋକକଳା ଓଡ଼ିଆ ଜାତିର ପ୍ରାଣ । ଏ ସବୁକୁ ଭୁଲି ଗଲେ ଓଡିଆଜାତି ନିଜର ବୋଲି ଆଉ କ'ଣ ଦେଖେଇବ ।

ଭିକାରୀ : ମୁଁ ଯାଉଛି ହଜୁର, ଖରା ବେଶି ହେଲେ ଭିକ ଗଣ୍ଡାକ ବି ମାଗିପାରିବିନି ।

ମାଧବ : ନା' ଆଉ ଭିକମାଗିବା ଦରକାର ନାହିଁ । ଆପଣ ଆମରି ଗାଁରେ ପୁଣି କୀର୍ତ୍ତନ ଦଳ ଗଢ଼ି ଶିଖେଇବେ ।

ଭିକାରୀ : ନା' ବାବୁ ମୁଁ ବୁଡା ହେଲିଣି । ମୁଁ ପାରିବିନି ।

ମାଧବ : ପାର ବା ନପାର । ଏଇଠି ମୋ ଘରେ ରହିବ । ଯାହା ଶୁଖିଛନ୍ତି ଗାଇଲେ ଅନ୍ୟମାନେ ଶିଖିବେ ।

ଭିକାରୀ		ବାବୁ, ବନମାଳୀ, କବିସୂର୍ଯ୍ୟ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ପୁରୁଣା କାଳିଆ ଗୀତ ଛଡା ଆଧୁନିକ ଗୀତ ମୋତେ କିଛି ଜଣା ନାହିଁ ଟୋକାଟାକିଳିଆ ଏସବୁକୁ ପସନ୍ଦ କରିବେନି କି ଶିଖିବେନି। ମିଛରେ ଏଇଠି ରହି ଆପଣଙ୍କର ଅନ୍ନଧ୍ୱଂସ କରିବା ସାର ହେବ ସିନା ।

ଗୋକୁଳୀ : ନା' ଆପଣଙ୍କ କଥା କିଛି ଶୁଣାଯିବନି। ଜେଜେଙ୍କ କଥା ଭାଙ୍ଗିଦେଲେ ସେ ମନଦୁଃଖ କରିବେ। ଏଇଠି ରହନ୍ତୁ ଆଉ ଚଞ୍ଚଳ ଆରମ୍ଭ କରନ୍ତୁ। ଆପଣଙ୍କ ପାଇଁ ପିଲା ମୁଁ ଆଜି ଠିକ୍ କରିଦେବି।

ମାଧବ : ବଟ-ବଟ !

ବଟ : (ପ୍ରବେଶ)ମୋତେ ଡାକୁଛନ୍ତି ବାବୁ।

ମାଧବ : ଏ ବୁଢା ବାବୁ ଆଜିଠୁ ଆମ ଭାଗବତ ଟୁଙ୍ଗି ପାଖ ଘରେ ରହିବେ। ତାଙ୍କୁ ସାଙ୍ଗରେ ନେଇ ଯା। (ଭିକାରୀ ହାତଧରି ବଟ ନେଇଯାଏ)

ବଟ		(ମନେ ମନେ ବିରକ୍ତ ପ୍ରକାଶ କରି) ଚାଲ ବାବୁ। ଦେଖୁଛି ମୋତେ ଖଂଜଣି ଶିକ୍ଷିବାକୁ ପଡିବ, ନହେଲେ ଏ ଚାକିରୀଟା ବାଏଁ ବାଏଁ ଉଡିଯିବ। (ବଟ ଓ ଭିକାରୀ ଚାଲିଯାଆନ୍ତି)

ମାଧବ : ତୁମେ ଜାଣିଛ ଗୋକୁଳି ପଞ୍ଜାବର ଲୋକଗୀତ ଗାଇ ଗାଇ ତାଙ୍କର ଶିଳ୍ପୀମାନେ ସାରା ପୃଥିବୀରେ ନାଁ କଲେଣି। ସେମାନେ ଦେଶ ଦେଶ ବୁଲି ତାଙ୍କର ଗୀତ ଗାଉଛନ୍ତି ଆଉ ପ୍ରଚୁର ପଇସାବି ପାଉଛନ୍ତି। ହେଲେ ଆମର ଏଠି ସବୁ ଓଲଟା।

ଗୋକୁଳି : ହଁ ଜେଜେ ଏ ଜାତିର ହୀନମନ୍ୟତା ହେଉଛି ଆମର ବଡ ଶତ୍ରୁ ଆମେ ସବୁ କ୍ଷେତ୍ରରେ ଆମ ନିଜ ଜିନିଷର ମୂଲ୍ୟ ବୁଝିବାକୁ ପ୍ରସ୍ତୁତ ନୁହେଁ। ଯାହା ଫଳରେ ଆମର ଏଇ ଅଧୋଗତି।

ମାଧବ : ହଁ ଆମ ପିଲାବେଳର ମଙ୍ଗଳ ଚଣ୍ଡିଆର ଘଣ୍ଟ ମାଡ, ଜାନୁ ଘଣ୍ଟିଆ, ଚକୁଳିଆ ପଣ୍ଡାର ଗୀତ, ଯୋଗୀର କେନ୍ଦେରା ଗୀତ, ଓଡିଆ ଝିଅର କାନ୍ଦଣା ଲହରୀ, ଡଗ ଡମାଳୀ ସବୁ ଆଉ କିଛି ବର୍ଷ ପରେ ଲୋପ ହେଇଯିବ। ତାକୁ ରକ୍ଷା କରିବାର ବ୍ୟବସ୍ଥା ନକଲେ ଏ ସବୁ ଦିନେ ଯେ ଥିଲା ସେକଥା ଲୋକ ଭୁଲିଯିବେ।

ଗୋକୁଳି : ଅନ୍ଧ ଓସ୍ତାଦ୍ ପାଖରୁ ଆପଣତ ଶୁଭାରମ୍ଭ କଲେ। 'ଉତ୍କଳ ଚେତନା'

କରିଆରେ ଏ ସବୁ ପାଇଁ କିଛି ନଷ୍ଟୟ କରାଯିବ ।

(ଆସିଛି ବର୍ଷା)

ବର୍ଷା : ଗୋକୁଳି ଭାଇ ତୁମେ ଆସିଗଲଣି, ବହୁତ ଭଲ ହେଲା ତୁମ ପାଖରେ ମୋର ବହୁତ ଜରୁରୀ କାମ ଅଛି ।

ଗୋକୁଳି : ତୋର ପୁଣି ଜରୁରୀ କାମ କ'ଣ ଆସିଲା ?

ବର୍ଷା : ବମ୍ବେରୁ ନୂଆ ଖୁଡୀ ଆସିବେ ବୋଲି ଚିଠି ଦେଇଛନ୍ତି । ତାଙ୍କୁ କେମିତି ବଢ଼ିଆ ଢଙ୍ଗରେ ସ୍ୱାଗତ କରାଯିବ ଟିକିଏ କହିଦେବ ।

ଗୋକୁଳି : ଆରେ ମୁଁ ସେ ବିଷୟରେ କ'ଣ ଜାଣିଛି ଯେ କହିବି । ବରଂ ତୁ କହିଲେ ମୁଁ ଶଙ୍ଖ ବଜେଇବି ।

ବର୍ଷା : ଓଃ ତୁମକୁ ମୁଁ ଶଙ୍ଖ ବଜେଇବା କଥା କହୁଛି । ତୁମେ ଭିତରକୁ ଆସିଲ ମୁଁ ଯାହା କହିବି ସେଇ କଥା କରିବ ।

ମାଧବ : ଆରେ ବସି ରହିଲ କାହିଁକି ଗୋକୁଳି ଯାଅ । ଏଇ ଘରେ ନୂଆ ବୋହୂକୁ ପାଛୋଟି ଆଣିବାକୁ ମୋ ନାକ କାନ୍ଦୁରୀ ନାତୁଣୀ ଛଡା କେହି ନାହାଁନ୍ତି ଯେତେବଳେ, ଆମ ସମସ୍ତଙ୍କୁ ତା ଆଦେଶ ମାନିବାକୁ ପଡିବ । ସେ ଯଦି ଧୁଳ ଧୁଳି ପକେଇବାକୁ କହିବ ତାକୁବି ଶିଖିବାକୁ ପଡିବ ।

ବର୍ଷା : (ଜେଜେଙ୍କୁ ଆଦେଶ ଦେବା ଢଙ୍ଗରେ) ଜେଜେ ତୁମେ ଦୟାକରି ଟିକିଏ ଚୁପ୍ ରହିବ ।

(ଗୋକୁଳୀ ଓ ମାଧବ ହସି ଉଠନ୍ତି । ହସ ସହିତ ଆଲୋକ ଧିରେ ଧିରେ କମିବାକୁ ଆରମ୍ଭ କରେ । ବର୍ଷା ରାଗ ତମ ତମ ହୋଇ ଭିତରକୁ ଚାଲିଯାଏ ।)



# ଭାଗ-୫

(ଆଲୋକ ଆସିଲା ବେଳେ ଦେଖାଯାଏ ପ୍ରଣବ ଓ ତା ନବ ବିବାହିତା ସ୍ତ୍ରୀ ରାଜଶ୍ରୀ ମଞ୍ଚଭିତରକୁ ପ୍ରବେଶ କରୁଛନ୍ତି । ବର୍ଷା ହାତରେ ଗୋଟିଏ ଥାଳିରେ ଫୁଲ ଚନ୍ଦନ ଇତ୍ୟାଦି ନେଇ ସେମାନଙ୍କୁ ସ୍ୱାଗତ କରୁଛି । ସେ ସ୍ୱାଗତ ଗୀତ ଗାଇ ନାଚୁଛି । ମାଧବ ବାବୁ, ଅମର ବାବୁ ଉପସ୍ଥିତ ଅଛନ୍ତି, ଭିକାରୀଟି ବର୍ତ୍ତମାନ ଭଲ ପୋଷାକ ପିନ୍ଧି ଉପସ୍ଥିତ ଅଛି । ଗୋକୁଳି ଓ ଭିକାରୀ ବୁଢା ବର୍ଷା ସହିତ କେତେବେଳେ ସ୍ୱର ମିଶେଇ ଗାଉଛନ୍ତି । ବଟ- ଗୋଟିଏ ଗୋଟିଏ ଆଟାଚି ଓ ଅନ୍ୟାନ୍ୟ ବ୍ୟାଗ ଆଣି ଘରେ ରଖି ଦେଇ ଯାଉଛି ଓ ବେଳେ ବେଳେ ସେ ମଧ୍ୟ ନାଚି ଦେଉଛି । ଏଇ ସ୍ଥାନରେ ଯେଉଁ ଗୀତଟି ପରିବେଷଣ କରାଯିବ ସଂଗୀତ ନର୍ଦ୍ଦେଶକ ଓ ନାଟ୍ୟ ନିର୍ଦ୍ଦେଶକ ନିମ୍ନରେ ଦିଆଯାଇଥିବା ବିଷୟ ଗୁଡିକୁ ଧ୍ୟାନରେ ରଖି ସଂଯୋଜନା କରିବେ । ଗୀତ ମଝିରେ ଓଡିଶୀ ନୃତ୍ୟର କିଛି ଅଂଶ, ସମ୍ବଲପୁରର ଲୋକଗୀତ, ଦାସକାଠିଆ, ପାଲା, ଉପେନ୍ଦ୍ର ଭଞ୍ଜ , ବନମାଳୀ ଇତ୍ୟାଦିଙ୍କର କିଛି ଗୀତ ସିଧା ସଳଖ ଓଡିଶାରେ ଲୋକ ମୁଖରେ ପ୍ରଚଳିତ ସ୍ୱରରେ ବୋଲାଯିବ । ଓଡିଆ ପିଠାପଣା, ପର୍ବପର୍ବାଣୀ, ଓଡ଼ିଆଣୀ ବୋହୂର ଅଳଙ୍କାର, ଯାହାକିଛି ଓଡ଼ିଆ ମାନଙ୍କର ବୈଶିଷ୍ଟ୍ୟ ଓ ସ୍ୱାଭିମାନର ପ୍ରତୀକ ଉପସ୍ଥାପନା କରିବାକୁ ହେବ । ଆବଶ୍ୟକ ସ୍ଥଳେ ଏଇ ଦୃଶ୍ୟକୁ ଅଧିକ ନୃତ୍ୟ ସଙ୍ଗୀତମୟ କରିବାକୁ ବର୍ଷାର ସାଙ୍ଗମାନଙ୍କୁ ସାମିଲ କରାଯାଇପାରେ..... । ନିମ୍ନରେ ଗୋଟିଏ

ଗୀତର ନମୁନା ଦିଆଯାଇଅଛି । କିନ୍ତୁ ସୃଜନଶୀଳ ନିର୍ଦ୍ଦେଶକ ନିଜର ରୁଚି ଅନୁଯାୟୀ ଗୀତିକାର ଓ ସଂଗୀତକାର ସହିତ ପରାମର୍ଶ କରି ଆଂଶିକ ବା ସଂପୂର୍ଣ୍ଣ ପରିବର୍ତ୍ତନ କରି ପାରିବେ ।)

ସ୍ୱାଗତଂ....ଶୁଭ ସ୍ୱାଗତଂ
ଉତ୍କଳ ଭୂଇଁ କରେ ଗୋ ମା
ତୁମକୁ ଶୁଭ ସ୍ୱାଗତଂ ।

ଜାଣେନା ଭଲ ଲଗିବ ଅବା ଏଇ ଆମର ଗାଁ
ଏଇ ସବୁଜ ଧାନର କ୍ଷେତ ସୁଲୁସୁଲୁଆ ବାଆ,
ଗରିବ ଏଇ ଚାଷୀର ଦେଶେ ପାଇବ ନାହିଁ ଧନ
ହୃଦୟ ଦେଇ କିଣିବେ କିନ୍ତୁ ଅତିଥି ମନପ୍ରାଣ ।
ସ୍ୱାଗତଂ ଶୁଭ ସ୍ୱାଗତଂ............ ।
ଲାଗିବ ଭଲ ଦେଖାଇ ନେବି କୋଣାର୍କର କଳା
ଓଡିଶୀ ନୃତ୍ୟ ଭଙ୍ଗିରେ ଯହିଁ ଜୀଇଁ ଉଠିଛି ଶିଳା
ଭୁବନେଶ୍ୱର ମନ୍ଦିରମାଳ ପୁରୀର ଜଗତ ନାଥ
ଜୟ ଦେବର ଗୀତ ଗୋବିନ୍ଦ ଦେବଦାସୀର ନୃତ୍ୟ
(ପରେ ପରେ ପଲ୍ଲବୀ  ଗାଇବା ସହିତ ନୃତ୍ୟ ଝମ୍ତା ଗିଣଝିଣା-
ତାଝମତା ଗିତାଝିଣା)
ଶୁଣାଇଦେବି ଉପଇନ୍ଦ୍ରଙ୍କୁ ଶବଦର ଯାଦୁକର
ଅବନାରସ ମାଳ ଜମକ ରସର ପୁଷ୍ପହାର,
(ଦେଖି ନବକାଳିକା -ବକାଳିକା-ମାଳିକା.....)
ସମ୍ବଲପୁର ସମଲେସ୍ୱରୀ ରସରକେଲି ଗୀତ
ବାଂଧ ଶାଡି ପିନ୍ଧି ନାଚିବ ତୁମେ ଡାଲଖାଇ ନାଚ,
(ଡାଲଖାଇରେ -ଡାଲଖାଇରେ)
ମଥାରେ ମଣି ନାକରେ ନୋଥ କାନରେ ପେଣ୍ଡିଫୁଲ
ଶଙ୍ଖା ସିନ୍ଦୁର ଚନ୍ଦ୍ରହାର ଅଣ୍ଟରେ ଅଣ୍ଟାସୂତା

ମାଣବସା ଓଷା, ଅକ୍ଷିମୁଠି ଆଦି ସାବିତ୍ରୀର ବ୍ରତ
ସାଧବ ବୋହୂ ସାଜି ଗାଇବ ...ବୋଇତ ବନ୍ଧାଣଗୀତ
(ଆକା ମା ଭୈ..........।)
ଚମ୍ପୁ ଛାନ୍ଦ ଭଜନ ଆଉ କୀର୍ତ୍ତନର ଛନ୍ଦ
ପଖଉଜର ତାଳେ ତାଳେ ବାଜି ଉଠିବ ଝାଞ୍ଜ
(ସଂଗିନୀରେ ରାସ ରଂଗିନିରେ ଦୋଷ କ୍ଷମାକର)
ବରହମପୁର ଠାକୁରାଣୀ ଯାତ ଦାସକାଠିଆର ମାତ
ବୈଷ୍ଣବ ପାଣି ଶୁଣାଇ ଦେବି ବାଜି ଉଠିବ ଡୋଲ।

(ଏହିପରି ଓଡିଶାର ବିଭିନ୍ନ ସ୍ଥାନ, ଭଗବତ ଗୀତ ଇତ୍ୟାଦି ଇତ୍ୟାଦି ବର୍ଣ୍ଣନା କରାଯାଇ ପାରିବ।

ଗୀତର ଶେଷ ପଦରେ ବର୍ଷା ସେମାନଙ୍କୁ ନେଇ ଭାଗବତ ଟୁଙ୍ଗିର ଜଗନ୍ନାଥଙ୍କ ନିକଟରେ ପ୍ରଣାମ କରାଇବା ସମୟରେ ଭିକାରୀ ବୁଡା କଣ୍ଠରୁ ଜଗନ୍ନାଥଙ୍କ ଭଜନ ଗାଇବା ସମୟରେ ଅନ୍ଧାର ହେବ)

(ଅନ୍ଧାର)

(ଅନ୍ଧକାର ଭିତରେ ପ୍ରବେଶକଙ୍କ କଣ୍ଠରୁ ନିମ୍ନ ଘୋଷଣା ଶୁଣାଯିବ)

ପ୍ରବେଶକ : ସାନ ପୁଅବୋହୂ ଆସି ପହଞ୍ଚିବା ପରେ ପରେ ଦିଲ୍ଲୀରୁ ପ୍ରଫୁଲବାବୁ ରାଉରକେଲାରୁ ପ୍ରଶାନ୍ତ ବାବୁ ଆସି ପହଞ୍ଚିଗଲେ। ଗାଁ ଭିତରେ ବୋହୂର ଗୃହ ପ୍ରବେଶ ଉପଲକ୍ଷେ ଭୋଜିଭାତ ବି ହେଇଗଲା। ଖବର ପାଇ ଜ୍ୱାଇଁ ସୌରଭ ବାବୁ ମଧ୍ୟ ଆସି ପହଞ୍ଚି ଗଲେ......।



## ଭାଗ-୬

(ମାଧବବାବୁଙ୍କ ଡ୍ରଇଁରୁମ, ଡାନି ଗୋଟେ Rhyme ଅଭିନୟ କରି ଶୁଣାଉଛି। ସୌରଭ, ପ୍ରଣବ, ପ୍ରଶାନ୍ତ ବସିଛନ୍ତି। )

ସୌରଭ : କ'ଣ ଏତିକିରେ ଶେଷ ହେଲା, ଆଉ ଜାଣିନୁ ?

ଡାନି : ନା।

ସୌରଭ : ମିଛ କହୁଛୁ ମୋ ପୁଅ ନେଲସନ ବି ତୋ ଭଳି Standard three ରେ ପଢୁଛି। ସେ ମିନିମମ ପଚାଶଟା Rhyme ଶୁଣାଇ ଦେବ।

ପ୍ରଶାନ୍ତ : ଇଏ ବି ଜାଣିଛି, ବହୁତ ଜାଣିଛି। ଗତବର୍ଷ ତାଙ୍କସ୍କୁଲ ଆନୁଆଲ function ରେ Rhyme, ହିନ୍ଦି ଗୀତଉପରେ Break dance କରି ଦି'ଟା କପ ପାଇଛି। ବାପା ଡାନିଯେଲ ସେ ଗୀତ ଗାଇଲୁ। ତୁ ଚିଜ ବଡିହେ ମସ୍ତ ମସ୍ତ.......

ଡାନି : No Daddy I don't like it.

ପ୍ରଶାନ୍ତ : ତା'ହେଲେ ଖଳ ନାୟକର ସେ ଗୀତଟା.....।

ଡାନି : no. no.

ପ୍ରଶାନ୍ତ : କ'ଣ ହେଇଛି ବାପା, ଭୋକ ହେଲାଣି।

ଡାନି : କହିଲି ପରା ମୋ ପେଟରେ କୁମୁରି କାମୁଡିଛ।

(ଦୌଡି ପଳେଇ ଗଲା)

ପ୍ରଣବ : କ'ଣ କହିଗଲା ସେ କୁମୁରି କାମୁଡୁଛି ?

ପ୍ରଶାନ୍ତ : (ହସି) କୁର୍ମି କୁ କୁମୁରି କହୁଛି।

ପ୍ରଣବ : ତାକୁ ଶିଖାନ୍ତୁ ଠିକ୍ ଶବଦ୍‌ଟା ଶିଖାନ୍ତୁ।

ପ୍ରଶାନ୍ତ : English midium ରେ ପଢୁଛି। ବଡ ହେଲେ ଶିଖିଯିବନି, ଏତେ ସୁନ୍ଦର English କହୁଛି। ତା ମୁଡ୍ ଭଲହେଲେ ଶୁଣିବୁ......।

ସୌରଭ : ମୋ ପୁଅ ନେଲସନ English midium school ରେ ପଢୁଛି ଘରେ ମୁଁ ତାକୁ ଓଡିଆ ବି ଶିଖାଉଛି।

ପ୍ରଣବ : ଓଡିଆକୁ ସମ୍ମାନ ଦେବାକୁ ହେବ। ଓଡିଆ ପ୍ରତି ଆପଣମାନଙ୍କ ମନରେ ତ ଗୋଟେ ନ୍ୟୁନଭାବ ରହିଯାଇଛି। ଯେତେ ଶିକ୍ଷା ଦେଲେ ପିଲାମାନେ ତାକୁ ଆଦର କରିବେନି।

ପ୍ରଶାନ୍ତ : ତୋର ପିଲାଦିନରୁ ଏ ଯେଉଁ ଆଦର୍ଶ ଦେଖେଇ ହେବାଟା ଗଲାନି। English ଗୋଟେ International language, ପୃଥିବୀ ଯାକ କମାଣ୍ଡ କରୁଛି।

ପ୍ରଣବ : ସେକଥା ମୁଁ କ'ଣ ଜାଣିନି ପ୍ରଶାନ୍ତ ଭାଇ। ଏଇ ସୌରଭ ଭାଇଙ୍କୁ ଦେଖନ୍ତୁ ସେ ଜଣେ ଓଡିଆ ଅଧ୍ୟାପକ, ତାଙ୍କୁ କାହିଁକି, ଯେ କୌଣସି ଓଡିଆ ଲୋକଙ୍କୁ ପରୀକ୍ଷା କରନ୍ତୁ ଗୋଟେ ମିନିଟ୍ଟ ଖାଣ୍ଟି ଓଡିଆରେ କହିପାରିବେନି।

ସୌରଭ : ସୋ ସାଙ୍ଗରେ ସେମିତି ଚ୍ୟାଲେଞ୍ଜ କରିବନି ପ୍ରଣବ।

ପ୍ରଣବ : ଏବେ ପରୀକ୍ଷା କରି ନିଅନ୍ତୁ। ଆପଣ ଦୁଇ ଜଣଙ୍କୁ ଯେ କୌଣସି ବିଷୟ ଉପରେ ଗୋଟେ ମନିଟ୍ଟରେ କିଛି କରିବାକୁ ଦିଆଯାଉ।

ସୌରଭ : କଉ ଟପିକ ଉପରେ କହିବି ?

ପ୍ରଣବ : ଏଇ ଆପଣଙ୍କର କବିତା ଉପରେ କୁହନ୍ତୁ। ଗୋଟେ ମିନିଟ୍ଟ ପାଇଁ କହିବେ- କିନ୍ତୁ କେବଳ ଖାଣ୍ଟି ଓଡିଆରେ

ସୌରଭ : ଠିକ୍ ଅଛି। ମୋତେ ଘଣ୍ଟାଟା ଦେଖାଅ।(ସୌରଭ ଘଣ୍ଟାଟା ଦେଖିଛି) ସମୟ ହେଇଗଲା Start କରୁଛି ତାହେଲେ ଦେଖିବୁ ଗୋଟେବି (ପ୍ରଣବ ହସି ଉଠେ) English word ରହିବନି।

ପ୍ରଣବ : ହେଇ ତିନିଟା ଶବଦ୍ ରହିଗଲାଣି, Start ଆଉ English word.

ସୌରଭ : Sorry, sorry, ମୁଁ unmindful ହେଇଗଲି ।

ପ୍ରଣବ : ପୁଣି ତିନିଟା ଶବଦ୍ ।

ସୌରଭ : ଏଥର ଶୁଣ- କୌଣସି English ଶବଦ୍ ରହିବନି ।

ପ୍ରଣବ : ପୁଣି ଗୋଟେ -ଶବଦ୍ English. (ପ୍ରଶାନ୍ତ ଓ ପ୍ରଣବ ହସି ଉଠନ୍ତି)

(ପ୍ରଫୁଲ୍ଲ ବାହାରୁ ଆସନ୍ତି)

ପ୍ରଫୁଲ୍ଲ : କ'ଣ କିରେ ସକାଳୁ ସକାଳୁ ବେଶ ଜମାଇ ଦେଇଛ ।

ପ୍ରଶାନ୍ତ : ବସନ୍ତୁ ଭାଇ... ସକାଳୁ ସକାଳୁ କୁଆଡେ ଯାଇଥିଲ ।

ପ୍ରଫୁଲ୍ଲ : ଗାଁ ଆଡେ ବୁଲି ଯାଇଥିଲି । ସେ ଜାଗାଟା ଦେଖିଆସିଲି ଯେ ସେଥିରେ ବାଉଣ୍ଡରି ବୁଲି ଯାଇଛି । 'ଉତ୍କଳ ଚେତନାର ଘର ବି କିଛି କିଛି ଉଠିଗଲାଣି ।

ସୌରଭ : ଭାଇ ଶୁଣୁଛି ବାପା ଏଠି ରୀତିମତ ଗୋଟେ ସଂସ୍କୃତିକ ଆନ୍ଦୋଳନ ଆରମ୍ଭ କରିଦେଲେଣି ।

ପ୍ରଫୁଲ୍ଲ : ପାଗଳାମି, ବୁଡାବୟସରେ ଏମତି ଫାଲ୍ତୁ ଧନ୍ଦାରେ ଖାଲି ଧନ ବରବାଦ କରିବା କଥା............ ।

(ଅନ୍ଧ ବୁଡାଟି ପ୍ରବେଶ କରେ.....)

ଅନ୍ଧ : ଆଜ୍ଞା ଏଠି ସୌରଭ ବାବୁ ଅଛନ୍ତି ?

ସୌରଭ : ହଁ 'ହଁ କ'ଣ ହେଲା ?

ଅନ୍ଧ : କିଏ ଜଣେ ବାବୁ ଆପଣଙ୍କୁ ଖୋଜୁଛନ୍ତି ।

(ସୌରଭ ବାହାରକୁ ଚାଲିଯାଏ ପରେ ପରେ ଅନ୍ଧ ବୁଡାଟି)

ପ୍ରଶାନ୍ତ : ଏ ଘରଟାକୁ ବାପା ଗୋଟେ ଧର୍ମଶାଳା କରିଦେଲେଣି ।

ପ୍ରଫୁଲ୍ଲ : ଏ ସବୁ ବନ୍ଦ କରିବାକୁ ହେବ ପ୍ରଶାନ୍ତ ।

ପ୍ରଶାନ୍ତ : କିନ୍ତୁ କେମିତି-ଆମେତ ସବୁ ଦୂରରେ ରହୁଛେ ।

ପ୍ରଫୁଲ : ତୁମେ ବସ ଆଜି ଯାହାହେଲେ decission ନେବା ।

(ସୌରଭ ପାଟି ବାହାରୁ ଶୁଣାଯାଏ)

ସୌରଭ : (ଅନ୍ତରାଳରୁ) ଭିତରକୁ ଆସନ୍ତୁ ।

ପ୍ରଫୁଲ : ହେ ସୌରଭ ଆସିଲାଣି ତା ସାମାନାରେ କଥା ବାର୍ତ୍ତା କରିବା ଠିକ ହେବନି । ତୁମେ ମାନେ ଚାଲ ଉପର ଘରକୁ ଯିବା ।

(ପ୍ରଫୁଲ , ପ୍ରଶାନ୍ତ , ପ୍ରଣବ ଚାଲିଗଲେ ।ପଶି ଆସିଲେ ସୌରଭ ଓ ଘର ମାଲିକ)

ସୌରଭ : ଆପଣ ଇଆଡେ କେମିତି ଚାଲି ଆସିଲେ ।

ଘରମାଲିକ : ପ୍ରତ୍ୟେକ ମାସର ଘର ଭଡା ନେଲାବେଳକୁ କବିତା ଶୁଣିବାର ସୁଯୋଗ ମିଳୁଥିଲା । ଏଥର ଗଲାବେଳକୁ ଦେଖିଲି ଆପଣ ନାହାନ୍ତି ।

ସୌରଭ : ଓଃ ତା' ହେଲେ ମୋ କବିତା ଶୁଣିବାକୁ ଏତେ ବାଟ ବସରେ ଚାଲିଆସିଲେ । ବସନ୍ତୁ ବସନ୍ତୁ । ୟା' ଭିତରେ ବହୁତ ନୂଆ ନୂଆ କବିତା ଲେଖିଛି । (ସୌରଭ ଭିତରକୁ ଯାଉଥିଲା )

ଘରମାଲିକ : ଆଜ୍ଞା ଏଠି ଆପଣଙ୍କର ଶଶୁର ଘରଟାରେ .... ?

ସୌରଭ : କିଛି ଅସୁବିଧା ନାହିଁ । ନଦୀକୂଳକୁ ଚାଲିଯିବା , ସୁଲୁ ସୁଲିଆ ପବନ ବହୁଥିବ-ମୁଁ ଗୋଟିଏ ଗୋଟିଏ କବିତା ଛାଡିଦେଉଥିବି । ଆପଣ ମନ ଖୁସିରେ ଶୁଣୁଥିବେ ।

ଘରମାଲିକ : ନାଇ ଆଜ୍ଞା ଏଥର ଆପଣଙ୍କ କବିତା ବହିରୁ ଗୋଟେ ଗୋଟେ କପି କିଣି ନେବି ବୋଲି ଭାବିଛି ।

ସୌରବ : ସେତେନା କ'ଣ ?

ଘରମାଲିକ : ଗତଥର ଆପଣଙ୍କର ଯୋଗିକ କବିତା ଶୁଣିଲାପରେ ମୋ blood pressure ଟା ବହୁତ କମିଯାଇଛି । ଏକଥା ଦେଖି ମୋ ପୁଅ ଯଦି ଧରି ବସିଲା - ଆପଣଙ୍କର କବିତା ସବୁ ପଢିବ ।

ସୌରଭ : ବୁଝିଗଲି , blood pressure ଟ ବଂଶଗତ ବେମାରି କଥା realise କରି ଆପଣଙ୍କ ପୁଅ prevantion is better than cure

ମେଥଡ୍‌ରେ କବିତା ପଢିବାକୁ ବସିଛି। ପିଲାଟା ବୁଦ୍ଧିମାନ ଅଛି। ହେଲେ କବିତା ବହି ଗୁଡାକ ମୁଁ ଏଠିକି ଆଣିଛି ବୋଲି ଆପଣ କେମିତି ଜାଣିଲେ ?

ଘରମାଲିକ : ଆପଣ ଷ୍ଠୀ କହିଲେ ଆଜ୍ଞା। ପରୀକ୍ଷାଖାତା ମୂଲ୍ୟାଙ୍କନ ସମୟରେ ଅଭିଭାବକ ମାନଙ୍କର କୁଆଡେ ଏ ସବୁ ବହିପତ୍ର ଉପରେ ବହୁତ demand । ତେଣୁ ଆପଣ ସାଙ୍ଗରେ ଧରି ଆସିଛନ୍ତି।

(ମନି ପର୍ସ କାଢନ୍ତି)

ସୌରଭ : ଆଚ୍ଛା ଆଚ୍ଛା ଆପଣ ତାହାହେଲେ ସବୁ ଜିନିଷ ବୁଝି ଆସିଛନ୍ତି। ଦିଅନ୍ତୁ ଟଙ୍କାଟା ଦିଅନ୍ତୁ।(ସୌରଭ ତାଙ୍କ ହାତରୁ ଟଙ୍କାଟା ନେଇଯାଆନ୍ତି ତା ଭିତରୁ ଗୋଟେ କାଗଜ ପାଆନ୍ତି) ନିଅନ୍ତୁ ଟଙ୍କା ଭିତରେ ଏ କାଗଜଟା ଆପଣଙ୍କର ନିଅନ୍ତୁ।

ଘରମାଲିକ : ସେଇଟା ରଖନ୍ତୁ ଆଜ୍ଞା ସେଇଟା ପୁଅର Roll No ।

ସୌରଭ : ତା'ମାନେ ଆପଣଙ୍କ ପୁଅ ପରୀକ୍ଷା ଦେଇଛି।

ଘରମାଲିକ : ହଁ, ଏଇଠି ଖାତା ପଡିଛି ଆପଣଙ୍କର ଯେଉଁଠି valuation କରୁଛନ୍ତି।

ସୌରଭ : ହେଲା ହେଲା ହେଇଯିବ, କେମିତି କରିଛି।

ଘରମାଲିକ : ବାଳୁଙ୍ଗାଟାର ସେଦିନ କ'ଣ ମୁଣ୍ଡ ଖରାପ ହେଲା କେଜାଣି ସେ ପେପରଟାରେ ବିଶେଷ ଲେଖିନି ବୋଲି କହୁଥିଲା।

ସୌରଭ : ଚଳିବ- ଚଳିବ, ଚଳେଇନେବା। ପାସ କରାଇଦେବା।

ଘରମାଲିକ : ଆଜ୍ଞା, ଯାହା ଆପଣଙ୍କର ଦୟା।

ସୌରଭ : ଦୟା କ'ଣ, ନାଇଁ ନାଇଁ ଦୟା କ'ଣ। ମୋରତ ମନେହୁଏ କଲେଜରେ ଯିଏ ନାଁ ଲେଖାଇଦେଲା ସେ ପଢୁ ବା ନପଢୁ, ଆଧ୍ୟାପକମାନେ ପାଠ ପଢାନ୍ତୁ ବା ନପଢାନ୍ତୁ, ସମସ୍ତଙ୍କୁ ନମ୍ବର ଦେବାକୁ ବାଧ୍ୟ। କାରଣ ପାସକରିବା ସେମାନଙ୍କର ଜନ୍ମସିଦ୍ଧ ଅଧିକାର।

ଘରମାଲିକ: ଆଜ୍ଞା, ଆପଣ ଉଦାର ଆଉ ହୃଦୟବାନ ବୋଲି ପିଲାଙ୍କ ସମସ୍ୟା ବୁଝୁଛନ୍ତି। ନହେଲେ.......।

ସୌରଭ : ନା'ନା' ଯାହା ଜଣାଯାଉଛି ଆପଣଙ୍କ ପୁଅ ବୁଦ୍ଧିମାନ। ଗୁଣ୍ଡାଗୁଡାକ, ଗଧଗୁଡାକ ଛୁରୀ ଦେଖେଇ, କପିକରି ଫାଷ୍ଟକ୍ଲାସରେ ପାସ କରୁଛନ୍ତି। ଇଏ କାହିଁକି ପାସ୍ କରିବନି। ବସନ୍ତୁ ମୁଁ କବିତା ବହିଗୁଡାକ ନେଇ ଆସୁଛି। (ଭିତରକୁ ଯାଇ ଗୋଟେ ବହି ପ୍ୟାକେଟ ନେଇଆସନ୍ତି) ନିଅନ୍ତୁ ଏଥିରେ ପାଂଚଟା ବହି ଅଛି।

ଘରମାଲିକ : ଆଜ୍ଞା।

ସୌରଭ : ତାକୁ କହିବେ ଏଥିରେ ଥିବା କବିତା ଗୁଡିକ ପଢିବା ଅପକ୍ଷା ମୁଖସ୍ଥ କରିଦେବ। ତା' ଜୀବନ ସାରା ବ୍ଲଡ ପ୍ରେସର, ହାଇପର ଟେନସନ ହେବନି। ସେ କ'ଣମ - ତା ପୁଅ ନାତି କାହାରିକୁ ହେବନି।

ଘରମାଲିକ : ଆସୁଛି ଆଜ୍ଞା, ନମସ୍କାର। ପୁଅ କଥାଟା ଯେମିତି......।

ସୌରଭ : କିଛି ଭାବିବାର ନାହିଁ। ନିଧଡକରେ ଯାଇ ଶୁଅନ୍ତୁ। ଆସନ୍ତା ଥର ଘରଭଡା ନେଲା ବେଳକୁ ଜାଣିନେବେ ନି।



## ଭାଗ-୭

(ମାଧବବାବୁ ଲେଖାଲେଖି କରୁଛନ୍ତି । ଟ୍ରେରେ କ୍ଷୀର ଗ୍ଲାସ ଧରି ପ୍ରବେଶ କରିଛି ରାଜଶ୍ରୀ । ଗୋଟିଏ ଟୁଲ ଉପରେ ରଖିଛି ।)

ରାଜଶ୍ରୀ : ବାପା, ଆପଣଙ୍କର ଏଇ ମେଡିସିନଟା ଖାଇବା କଥାନା ?

ମାଧବ : ହଁ ମା, ସେଇଠି ରଖିଦେ ମୁଁ ଖାଇନେବି ।

ରାଜଶ୍ରୀ : କ୍ଷୀରଟା ଥଣ୍ଡା ହେଇଯିବ ଏଇଟା ପ୍ରଥମେ ପି ଦିଅନ୍ତୁ ।

ମାଧବ : ତୋତେ ଏ ସବୁ କାମ କରିବାକୁ କିଏ କହୁଛି ମା । ବଟ କ'ଣ ଫୁର୍ତ୍ତି ମାରୁଛି ।

ରାଜଶ୍ରୀ : ବର୍ଷା କହୁଥିଲେ ଓଡ଼ିଆ ଘରର ବୋହୂ ହେଲେ ଏ ସବୁ କଥା ନିଜେ ବୁଝିବାକୁ ପଡ଼ିବ ।

ମାଧବ : ତା ବୋଲି ତୁ ସକାଳୁ ସଂଧ୍ୟାଯାଏ କାମ କରିଚାଲିଥିବୁ ।

ରାଜଶ୍ରୀ : ବମ୍ବେରେ ମୁଁ ଯେଉଁଠି କାମକରେ ସେକାଗାଟ ମୋ ଘରଠୁ ସତୁରି କି.ମି ଦୂର । ସକାଳ ୫ଟାରୁ ଉଠି ବସ ଧରି ଯିବାକୁ ହୁଏ । ଫେରୁ ଫେରୁ ରାତ ଆଠ ଟା । ତା ତୁଳନାରେ ଏ କାମ କ'ଣ ? ବାପା, ସଚ୍ଚି ରାଉତରାୟ ଓଡ଼ିଶାର ସବୁଠୁ ବଡ ଲେଖକନା, ତାଙ୍କୁ ଜ୍ଞାନପିଠ ଦିଆଯାଇଛି ।

ମାଧବ : ତାଙ୍କ ଲେଖା ତା' ହେଲେ ପଢ଼ିଲୁଣି ।

ରାଜଶ୍ରୀ : ନା' ତାଙ୍କର A boatman boy ଇଂରାଜୀ କବିତାଟି ପଢ଼ିଛି । ଏଥର ଭଲଭଲ ଓଡ଼ିଆ writer ଙ୍କ କିଛି ବହି କିଣି ନେଇ ପଢ଼ିବି ବୋଲି ଭାବୁଥିଲି କିନ୍ତୁ market ରେ ବୁଝିଲି ବହୁତ ଦାମ ।

ମାଧବ : ହଁ ମା', ଓଡିଆ ମାନଙ୍କର ପଠନ ଅଭ୍ୟାସ ବହୁତ କମ। ଆମର ଶିକ୍ଷିତ ଲୋକ ହାତରେ English କିମ୍ବା ହିନ୍ଦି ବହି ଧରି ବୁଲିବାକୁ ନିଜର ଗୌରବ ମନେ କରନ୍ତି।

ରାଜଶ୍ରୀ କିନ୍ତୁ ଓଡିଆର ବେଶ ବଡ ବଡ ନାମକରା writer ଅଛନ୍ତି। ଆମ କଲେଜକୁ ଥରେ ଜଣେ writer ଙ୍କୁ ଡକାଯାଇ ଥିଲା। ତାଙ୍କ ନାଁ ମନୋଜ ଦାସ। ତାଙ୍କର କିଛି ଇଂରାଜି ଲେଖା, short story ପଢିଛି। wonderful, ଯେ କୌଣସି ଲୋକ impressed ହେଇ ଯିବ।

ମାଧବ ତୁ ପଡିଛୁ ବୋଲି impressed ହେଇଛୁ ମା, ଯିଏ ପଡିବନି...ସେ ଚିହ୍ନିବ କେମିତି।

ରାଜଶ୍ରୀ : ସେ ଜ୍ଞାନପୀଠ ପାଇଲେଣି ବାପା ?

ମାଧବ : ଏଠି ସାହିତ୍ୟ ମହାରଥି ହେଉଛନ୍ତି ବଡ ବଡ ଅଫିସର ଆଉ ପ୍ରଭାବଶାଳୀ ଲୋକ ମା'। ଏମାନଙ୍କ କବଳରୁ ପୁରସ୍କାର ସମ୍ମାନ ମୁକ୍ତ ହେଲେ ଅବା ଅନ୍ୟମାନେ କିଏ ପାଇବେ ?

ରାଜଶ୍ରୀ : କିନ୍ତୁ ମୁଁ ଜାଣିଛି ଓଡିଆମାନେ ବେଶ ନାଁ କରିଛନ୍ତି।

ମାଧବ : ହଁ ମା, ଓଡିଆମାନେ ନିବୁଦ୍ଧିଆ ନୁହଁନ୍ତି। ସେମାନେ ଏକା ଏକା କାମ କଲେ ବ୍ୟକ୍ତିଗତ ଭାବରେ କିଛି ହାସଲ କରି ପାରନ୍ତି। କିନ୍ତୁ ଦଳଗତ ଭାବରେ କୌଣସି କାମ କଲେ ପରସ୍ପର ଗୋଡ ଟଣାଟଣି ଆରମ୍ଭ କରିଦିଅନ୍ତି।

(ପ୍ରଶାନ୍ତ ଓ ଡାନି ଆସି ଠିଆହୁଅନ୍ତି। ରାଜଶ୍ରୀ ଭିତରକୁ ଚାଲିଯାଏ)

ମାଧବ : ଡାନି ମୋ ପାଖକୁ ଅସିଲୁ ବାପା ଆଃ।

ଡାନି : ମୁଁ ତୁମ ପାଖକୁ ଅସିଛି, ତୁମକୁ ମୋର ଗୋଟେ କଥା କହିବାର ଅଛି।

ମାଧବ : ଗୋଟେ କଥା କାହିଁକି ମୋ ଗେହ୍ଲା ନାତିଆ ପାଖରୁ ମୁଁ ବହୁତ କଥା ଶୁଣିବି। ବସ ପ୍ରଶାନ୍ତ। ଡାନି ବୋଉକୁ ସାଥିରେ ନେଇ ଆସିଲୁନି ?

ପ୍ରଶାନ୍ତ : ତା'ର ବହୁତ ଇଚ୍ଛାଥିଲା ହେଲେ ହଠାତ୍ ଦେହଟା ଟିକିଏ ଅସୁସ୍ଥ ହେଇଗଲାତ।

ଡାନି : Daddy ମିଛ କହୁଛନ୍ତି Grand pa । ମାମିରLadies Club function ଥିଲା ।

ପ୍ରଶାନ୍ତ : (ଆଖି ଦେଖାଇ ଚୁପ କରାନ୍ତି)

ମାଧବ : ତୋ ବ୍ୟବସାୟ କେମିତି ଚିଲିଛି ?

ପ୍ରଶାନ୍ତ : ଚାଲିଛି, ତେବେ funds ଅବାବରୁ କେତେବେଳେ କ'ଣ ହେଇଯିବ କହି ହବନି ।

ମାଧବ : ତୋ ଶଶୁର ମରିବା ପୂର୍ବରୁ ବ୍ୟବସାୟକୁ ବେଶ ବଢ଼େଇ ଦେଇଥିଲେ ଶୁଣିଛି ।

ପ୍ରଶାନ୍ତ : ବଢ଼େଇ ଦେଇଥିଲେ ନୁହେଁ ବାପା ମୋତେ ବୁଡେଇ ଦେଇଥିଲେ କୁହ । ବାହାର ପାର୍ଟି ପାଖରୁ ଏତେ ସବୁ credit ନେଇଆସିଥିଲେ ଯେ ମୁଁ ବର୍ତ୍ତମାନ ହଇରାଣ ହେଇ ଯାଉଛି । ଆପଣ ଜାଣିଥିବେ ମାର୍କେଟ ବିଲ୍ଡିଂ ପାଖ କୋଠାଟା ମୁଁ ବନ୍ଧା ପକେଇ ଲୋନ ଆଣିଛି ।

ମାଧବ : ନା' ମୁଁ କିନ୍ତୁ ଓଲଟା ଶୁଣୁଥିଲି ତୁ business କୁ ଦୁଇଗୁଣ କରି ଦେଇଛୁ ।

ପ୍ରଶାନ୍ତ : ଶତ୍ରୁମାନେ ଏକଥା ପ୍ରଚାର କରିଛନ୍ତି ବାପା, ପ୍ରକୃତରେ ଆମର ଅବସ୍ଥା କ'ଣ ନିଜେ ଗଲେ ଦେଖି ଆସିବେ ।ତୁମ ବୋହୂ ଆସିଲେ ଦେଖିବେ ଗୋଟିଏ ବୋଲି ଅଳଙ୍କାର ଆଉ ନାହିଁ ।

ଡାନି : ହଁ Grand pa ମାମିର ସବୁ ଗହଣା ବ୍ୟାଙ୍କ ଲକର ଭିତରେ ରଖି ଦେଇଛି ।

ପ୍ରଶାନ୍ତ : ଚଗଲା କଉଠିକାର । ଲକର ଭିତରେ ରଖି ଦେଇଛି ତୁ କେମିତି ଦେଖିଲୁ ।

ଡାନି : ସେଦିନ, ସେଦିନ ମାମୀର Birth day ଦିନ, ତୁମେ ଗୋଟେ diamond ନେକଲେସ present କଲ । ବ୍ୟାଙ୍କ ଲକର ଭିତରେ ରଖାହେଲାନି ?

ପ୍ରଶାନ୍ତ : ଆରେ ସେଇଟା ଇମିଟେସନ ଥିଲା । ତୁ ଜାଣିନୁ...... ।(କଥା ବଦଳେଇ) ବାପା, ଏଇ ସୁଟ କନାଟା ତୁମ ବୋହୂ ଦେଇଛି ।

ମାଧବ : ସୁଟ୍ କନା ? ମୁଁ ତ ବର୍ତ୍ତମାନ ଧୋତି ପଂଜାବିରେ କାମ ଚଳଉଛି ଏଇଟା କ'ଣ ହେବ ।

(ପ୍ରଶାନ୍ତ କନାକୁ ପ୍ୟାକେଟ ଭିତରୁ ଖୋଲେ)

ପ୍ରଶାନ୍ତ : ଏଇଟା ବହୁତ ବଡିଆ କନା ବାପା, ଇମ୍ପୋର୍ଟେଡ ମେଟେରିଆଲରେ ତିଆରି। ଗୋଟେ ଗଳାଚିପା କୋଟ୍ ଆଉ ପ୍ୟାଣ୍ଟ୍ ହେଇଯିବ । ଆପଣ ବର୍ତ୍ତମାନ ସଭା ସମିତି function ଇତ୍ୟାଦି attend କରୁଛନ୍ତି ତ ଏଇଟା ଭଲ ହେବ ।

ମାଧବ : ନା' ସେ ସବୁ ମୋର ଦରକାର ନାହିଁ । ତୁ ବରଂ ନେଇ ନିଜପାଇଁ କର ।

ପ୍ରଶାନ୍ତ : ଆପଣଙ୍କ ବୋହୂ କିନ୍ତୁ ମନ ଦୁଃଖ କରିବ ବାପା, ଆପଣ ପିନ୍ଧନ୍ତୁ ବା ନପିନ୍ଧନ୍ତୁ ଏଇଟା ରଖନ୍ତୁ ।

ମାଧବ : ହଉ ସେଇଠି ରଖିଦେ ।

ପ୍ରଶାନ୍ତ : ଡାନି ତୁ ନଦୀକୂଳକୁ ଯିବାକୁ କହୁଥିଲୁନା, ଆସ ଯିବା.. ।

ଡାନି : ନା'!

ପ୍ରଶାନ୍ତ : ଆସ୍ କହୁଛି । ତୁ ଏଠି ରହିଲେ କେଜେଙ୍କ ଜିନିଷ ଏପଟ ସେପଟ କରିବୁ ।

ମାଧବ : ତୁ ଯୁଆଡେ ଯିବା କଥା ଯା-ସେ ମୋ ପାଖରେ ଥାଉ ।(ପ୍ରଶାନ୍ତ ଚାଲିଯାଏ) ତୋର କ'ଣ ଗୋଟେ ଗୁପ୍ତ କଥା ଅଛି... କହିବୁ ପରା ।

ଡାନି : ରୁହ, ମୁଁ ସବୁ ଆଡେ ଦେଖି ଆସେ ।

(ଡାନି ଯାଇ ସବୁ ଆଡେ ଦେଖି ଆସେ)

ଡାନି : ଶୁଣ, ମୁଁ ଯାହା କହିବି ତୁମେ ଯେମିତି କହାକୁ ନକୁହ ।

ମାଧବ : ନା' କାହାକୁ କହିବିନି । କହ କ'ଣ କହିବୁ ?

(ହଠାତ୍ ଡାନି ମାଧବଙ୍କ କାନ ପାଖକୁ ମୁଁହ ନେଇ କ'ଣ କହିବାକୁ ଚାହେଁ)

ମାଧବ : (ଡାନିକୁ ସମାନାକୁ ନେଇ ଆସି) ସେମିତି କାନ ପାଖେର କହିଲେ ମୁଁ କିଛି ଜାଣି ପାରୁନି । ଯାହା କହିବା କଥା ବଡ ପାଟିରେ କହ ।

ଡାନି : ନା ମୁଁ ବଡ ପାଟିରେ କହିବିନି । କାନ୍ଥର ପରା କାନ ଅଛି ।

ମାଧବ : (ହସି ଉଠି) କାନ୍ଥର କାନ ଥିବା କଥା କିଏ କହିଲା ?

ଡାନି : ଡାଡି, ମମି ସବୁବେଳେ କୁହନ୍ତି ।

ମାଧବ : ମିଛ କଥା, କାନ୍ଥ ଗୋଟେ ନିର୍ଜୀବ ପଦାର୍ଥ, କାନ କୁଆଡେ ଆସିବ, ତୁ ବଡ ପାଟିରେ କହ ।

(ହଠାତ ପ୍ରଫୁଲ୍ଲ ହାତରେ ଗୋଟେ ପ୍ୟାକେଟ ଧରି ପ୍ରବେଶ କରେ ଡାନି କଥା ବନ୍ଦ କରି ଖଟ ଉପରେ ଯାଇ ଶୋଇ ପଡେ....)

ମାଧବ : କ'ଣ ପ୍ରଫୁଲ, ହାତରେ ସେଇଟା କ'ଣ ?

ପ୍ରଫୁଲ୍ଲ : ଗୋଟେ ଛୋଟ ଏଫ୍.ଏମ.ସେଟ ତୁମ ବୋହୂ ତୁମକୁ present କରିଛି ।

ମାଧବ : ମୋରତ ଗୋଟେ ସେଟ ଅଛି ଏଇଟା କ'ଣ ହେବ ।

ପ୍ରଫୁଲ : (ପ୍ୟାକେଟ ଖୋଲି) ଏଇଟା ଗୋଟେ ଭଲ ସେଟ୍‌ଟା, ଆପଣ news ଇତ୍ୟାଦି ଶୁଣିବାକୁ ସୁବିଧା ହେବ ।

ମାଧବ : ଠିକ୍ ଅଛି ଆଣିଛୁ ଯଦି ସେଟାକୁ ସେଇଠି ରଖିଦେଇଯା...... ।

(ପ୍ରଫୁଲ୍ଲ ସେମିତି ବସି ରହେ କିଛି ସମୟ)

ମୋତେ କିଛି କହିବୁ ?

ପ୍ରଫୁଲ : ନା- ମାନେ କହିବି ଆଉ କ'ଣ, କିଛି ନାହିଁ ।

ମାଧବ : ତୋ ମୁହଁରୁ ଜଣାଯାଉଛି ତୁ କିଛି କହିବାକୁ ଚାହୁଁଛୁ ।

ପ୍ରଫୁଲ୍ଲ : ମାନେ କ'ଣକି ବାପା ମୁଁ ଦିଲ୍ଲୀରେ ଗୋଟେ ଫ୍ଲାଟ ପାଇଁ apply କରିଥିଲି ସେଇଟା ମିଳିଯାଇଛି । ହଠାତ୍ ଅଠର ଲକ୍ଷ ଯୋଗାଡ ହେଇ ପାରୁନି ।

ମାଧବ : ତୋର ଭୁବନେଶ୍ୱରରେ ଗୋଟେ କୋଠା ଅଛି । ଦିଲ୍ଲୀରେ କିଣିବା କ'ଣ ଦରକାର ।

ପ୍ରଫୁଲ : ଲୋକ ଖୋଜି ଖୋଜି ପାଉ ନାହାଁନ୍ତି । ମିଳିଯାଇଛି ଯେତେବେଳେ ପକେଇ ଦେଇଥିଲେ ଭଲ ହେଇଥାନ୍ତା ।

ମାଧବ : ତୁ ତ ଜାଣିଛୁ ରିଟାୟାର୍ଡ ପରେ ଯାହା ମିଳିଲା ମୁଁ ସବୁ ତୁମମାନଙ୍କ ମଧ୍ୟରେ ବାଣ୍ଟି ଦେଇଛି ।

(ଦରଜା ପାଖରେ ପ୍ରଶାନ୍ତ ଓ ପ୍ରଣବ ଆସି ଠିଆ ହୁଅନ୍ତି)

ପ୍ରଫୁଲ୍ଲ : ଆରେ ତୁମେ ସବୁ ଭିତରକୁ ଆସ । ଯାହା ମୋତେ କହୁଥିଲ ସବୁ ବାପାଙ୍କ ସାମାନାରେ କୁହ ।

ମାଧବ : ଓଃ ତୁମେ ତିନି ଜଣ ମିଶି ତାହେଲେ କିଛି ଗୋଟେ କହିବାକୁ ଆସିଛ ।

ପ୍ରଶାନ୍ତ : ଆମର ଏଠି ଇସ୍ପାତ କାରଖାନା ହେଲେ ଏଠି ବଡ ବଡ କମ୍ପାନୀ ମାନେ ଆସି ଘର ଖୋଜିବେ । ଭାବୁଥିଲୁ ଆମ ଘରଟାକୁ ରିମଡେଲିଂ କରିଦେଲେ ଭଡାରେ ଲାଗିଯାଆନ୍ତା ।

ମାଧବ : ଭଲ କଥା । ତେବେ ମୁଁ କୋଉଠି ରହିବି ?

ପ୍ରଫୁଲ୍ଲ : ଆପଣ ଆମ୍ଭମାନଙ୍କ ପାଖରେ ରହିବେ ।

ପ୍ରଶାନ୍ତ : ଆପଣଙ୍କର ହାର୍ଟ ବେମାରି ଅଛି । ଏଠି ଭଲ ଡାକ୍ତରଟିଏବି ନାହିଁ ଯେ ଦେଖା ଶୁଣା କରିବ ।

ପ୍ରଣବ : ଭାଇ ଠିକ କହୁଛନ୍ତି ବାପା, ଆପଣ ଚିନ୍ତା କରନ୍ତୁ, କୋଉଟା ଭଲହେବ ।

ମାଧବ : ଆରେ ମୁଁ କ'ଣ ଚିନ୍ତାକରିନି ପ୍ରଣବ । ବହୁ ଚିନ୍ତାକଲା ପରେ ଯାଇ ଗାଁରେ ଆସି ରହିଛି ।

ପ୍ରଶାନ୍ତ : ଏ ଘରଟାରେ ଯଦି ରହିବାକୁ ଚାହୁଁଛନ୍ତି । ଘର ସମାନାରେ କିଛି ଦୋକାନଘର କରି ଭଡା ଦେଇହେବ ।

ମାଧବ : ଘର ସାମନାରେ ମାନେ ....କଉ ଜାଗା କଥା କହୁଛୁ ?

ପ୍ରଫୁଲ୍ଲ : ସେ ଭାଗବତ ଟୁଙ୍ଗି ଆଉ ସେ ଅଂଧ ବୁଡା ଯଉ ଘରେ ରହୁଛି । ସେ ଗୁଡାକ ଭାଙ୍ଗିଦେଲେ ଭଲ ଜାଗା ମିଳିବ ।

ମାଧବ : ନା' ସେ ଗୁଡାକ ଭାଙ୍ଗି ହବନି । ସେଠି ଗାଁ ଯାକ ଲୋକ ବସାଉଠା କରୁଛନ୍ତି ।

ପ୍ରଫୁଲ୍ଲ : ଆପଣ ସବୁ କଥାକୁ ମନାକରୁଛନ୍ତି ସେଥିପାଇଁ....... ।

ମାଧବ : ଯାହା କହିବ ସ୍ପଷ୍ଟ ଭାବରେ କହ । ତୁମେ ଜାଣ ମୋତେ ବୁଲେଇ ବାଙ୍କେଇ କହିଲେ ମୁଁ ବୁଝିପାରେନି ।

ପ୍ରଶାନ୍ତ ଆମେ ସମସ୍ତେ ଏଥର ଏକାଠି ହେଇଛୁ । ଆଉ କେତେବେଳେ ଏକାଠି ହେଇପାରିବୁ କି ନାହିଁ ଠିକ ନାହିଁ । ଆମ ସମସ୍ତଙ୍କ ସାମାନାରେ କିଛି ଗୋଟେ ବ୍ୟବସ୍ଥା କରି ଦେଲେ ଭଲହୁଅନ୍ତା ।

ମାଧବ ମାନେ ତୁମେ ମାନେ ଭାଗବଣ୍ଟା କଥା କହୁଛ ?

ପ୍ରଫୁଲ ମାନେ କିଛି ନହେଲେ କାଗଜପତ୍ରରେ କିଛି କରିଦେଇଥିଲେ ଭଲ ହେଇଥାନ୍ତା ।

ମାଧବ ନା', ବର୍ଷା ପାଇଁ କିଛି ଗୋଟେ ବ୍ୟବସ୍ଥା କରି ନପାରିବା ଯାଏ ମୁଁ କିଛି କରିପାରିବିନି । ତାର ବାହାଘର ଶେଷହେବା ପରେ ମୋ ମୁଣ୍ଡରୁ ଦାୟିତ୍ୱ ଖସିଯିବ । ତା'ପରେ ଯାହା ଚାହିଁବ କରିବି ।

ପ୍ରଶାନ୍ତ : କିନ୍ତୁ ସେ ପର୍ଯ୍ୟନ୍ତ ଏ ସଂପତ୍ତି ରହି ପାରିଲେତ ?

ମାଧବ : ତୋ କଥା ମୁଁ ବୁଝିପାରିଲିନି ?

ପ୍ରଶାନ୍ତ : ଏଇ, ଆମକୁ ନ ପଚାରି ଆପଣ ଗାଁ ଭିତର ଜାଗାଟା ଦାନ କରିଦେଲେ ଆଉ କ'ଣ କେତେବେଳେ କରିଦେବେ କିଏ ଜାଣିଛି ।

ମାଧବ : ଓଃ ତୁମେ ମାନେ ତାହେଲେ ମେଳିବାଂଧି ଏଇକଥା କହିବାକୁ ଆସିଥିଲ । ତେବେ ଶୁଣ, ସେ ଯାଗାଟା ବହୁତଦିନ ତଳେ ମୁଁ ନିଜ ପଇସାରୁ କିଣିଥିଲି । ସେଇଟା ସଂପୂର୍ଣ୍ଣ ଭାବରେ ମୋ ଯାଗା । ମୁଁ ଯାହାକୁ ଚାହିଁବି ଦାନକରି ପାରିବି । ଆଉ ତୁମର କିଛି କହିବାର ଅଛି ?

(ପ୍ରଫୁଲ ଭାଇମାନଙ୍କୁ ଆସିବାକୁ ଠାରି ଦିଏ । ସମସ୍ତେ ଧିରେ ଧିରେ ଚାଲିଯାଆନ୍ତି । ଡାନି ଶେଯରୁ ମୁହଁ ଉଠେଇ ଜେଜେ ଆଡକୁ ଚାହେଁ)

ଡାନି : ସମସ୍ତେ ଚାଲିଗଲେଣି Grand pa ।

ମାଧବ : ଏଁ ।

ଡାନି : ତା ହେଲେ ମୋ କଥାଟା କହିବି ।

ମାଧବ : ହଁ ଯାହା କହିବା କଥା କହ ।

ଡାନି : ମାମି କହୁଥିଲା ତୁମେ ଜଣେ ଯକ୍ଷ ଏକଥା କ'ଣ ସତ ? ତୁମେ କୁଆଡେ କେବେହେଲେ ମରିବନି।

ମାଧବ ଏକଥା ତୋ ମାମୀ କହୁଥିଲା ?

ଡାନି ହଁ, Daddy ଙ୍କୁ କହୁଥିଲା । ଆଉ କହୁଥିଲା ତୁମ ନାଁ ଜଗନ୍ନାଥ କୁଣ୍ଡୁ। ତୁମ ଆଲମାରି ଭିତରେ ବହୁତ ସଂପତ୍ତି ଲୁଚେଇ ରଖିଛ।

ମାଧବ : (ଅନ୍ୟମନସ୍କ ହୋଇ ଯାଅନ୍ତି)

ଡାନି : ତୁମେ ଜଲଦି ମରିଗଲେ ଆମେ ଗୋଟେ ଫଂରେନକାର କରିବୁ। ତୁମେ ଜଲଦି ମରୁନ କାହିଁକି ଗ୍ରାଣ୍ଡପା' ? ମୁଁ କାରରେ ବସି ସ୍କୁଲକୁ ଯାଆନ୍ତି। ତୁମେ କଥାଦିଅ କେବେ ମରିବ ? କଥାଦିଅ।

ମାଧବ : ଆରେ ମୋ ପୁଅ ବୋହୂ ଯେତେବେଳେ ଚାହୁଁଛନ୍ତି ମୁଁ କ'ଣ ବେଶି ଦିନ ବଞ୍ଚିପାରିବି।

ଡାନି : ତୁମେ ମିଛ କହୁଛ ଗ୍ରାଣ୍ଡପା ।

ମାଧବ : ନା' ଗ୍ରାଣ୍ଡପା ମାନେ କେବେ ମିଛ କୁହନ୍ତିନି। ସେମାନେ ମିଛ କହିଲେ ତାଙ୍କ ପିଲାମାନଙ୍କର ଅମଂଗଳ ହବ ପରା।

ଡାନି : ଡାଡି କହୁଥିଲେ ତୁମେ ମିଛୁଆ, କପଟୀ, ଲୁଚେଇ ଲୁଚେଇ ତୁମ ଝିଅକୁ ବହୁତ କଥା ଦେଉଛ। ତୁମେ ମୋତେ ଠକି ଦେଉଛ। ତୁମେ କେବେ ମରିବନି।

ମାଧବ : ଆରେ ବାବା ମୁଁ କଥା ଦେଉଛି ଚଂଚଳ ମରିବି।

ଡାନି : ପ୍ରମିସ୍ ।

ମାଧବ : ପ୍ରମିସ୍ । (ମାଧବ ଆଖିରେ ଲୁହ)

(ଅନ୍ଧବୁଡାର ଗଂଜଣି ମାଡସହ "କାହିଁକି ଆସିଛୁ ମନ କିସ ନେବା ପାଇଁରେ" -ଭଜନଟି ଶୁଣାଯାଉଥାଏ)



# ଭାଗ - ୮

(କ୍ଷେତ୍ରମୋହ ବାବୁଙ୍କ ଘରେ ବସିଛନ୍ତି ପ୍ରଫୁଲ୍ଲ, ପ୍ରଶାନ୍ତ ଓ ପ୍ରଣବ । କ୍ଷେତ୍ରମୋହନ ବାବୁ ପଦଚାରଣା କରୁଛନ୍ତି)

କ୍ଷେତ୍ର : ବାପା ତୁମକଥା ଶୁଣିବେନି ବୋଲି ତୁମେ ମାନେ ଚୁପଚାପ୍ ରହିଯିବ । ଦେଖିବ ଏଥର ଗାଁରୁ ଯାଇ ପୁଣି କେବେ ଅସିଲା ବେଳକୁ ଫଟା କଉଡି ଟିଏ ବି ନଥିବ । ଜାଣିଛ ଯେଉଁ ଜାଗାଟା ତୁମ ବାପା ଦାନ କରି ଦେଇଛନ୍ତି ତା ଦାମ କେତେ ହେବ ।

ପ୍ରଶାନ୍ତ : କେତେ ?

କ୍ଷେତ୍ର : ଏଠି ଇସ୍ପାତ କାରଖାନା ହେବବୋଲି ଘୋଷଣା ହେଲାପରେ ଦାମ ସବୁ ହୁ ହୁ ହେଇ ବଢି ଚାଲିଛି । ସେଠି ବର୍ତ୍ତମାନ ଗୁଣ୍ଠ ପଚିଶହଜାର ରୁ କମଯିବନି । ସେ ଜାଗାଟା ଗୋଟେ ଏକରରୁ ଅଧିକା ଅଛି...ତୁମେ ହିସାବ କର ।

ପ୍ରଫୁଲ ବାବା, ଆପଣ କିଛି ଗୋଟେ ବୁଦ୍ଧି ବାହାର କରନ୍ତୁ । ଯେମିତି ହେଲେ ଗୋଟେ ସମାଧାନ ହେଇଯାଉ ।

ପ୍ରଶାନ୍ତ : ଏଇନା ଆମର ଭାଗ ହେଉ ବା ନହେଉ...... ବାପା ଯେମତି further ଦାନ ଖଇରାତ କରିବେନି ତାର ଗୋଟେ ବ୍ୟବସ୍ଥା କରନ୍ତୁ ।

କ୍ଷେତ୍ର : ଦେଖ legal advice ଯଦି ଚାହୁଁଛ ବହୁତ ବାଟ ଅଛି । ଡାକ୍ତରକୁ ଧରାଧରି କରି ଗୋଟେ certificate ଯୋଗାଡ କରିଦେଲେ ତାଙ୍କୁ ଆମେ court ରେ ପାଗଳ ବୋଲି ଘୋଷଣା କରି ଦେଇପାରିବା । ବାସ ସେ ଆଉ କିଛି କରି ପାରିବେନି ।

ପ୍ରଣବ : ମୋର ଟିକିଏ କାମ ଥିଲା ଭାଇ- ରାକଶ୍ରୀକୁ ଧରି ଅମର ମଉସାଙ୍କ ଘରକୁ ଯିବାକୁ କହିଥିଲି।

ପ୍ରଶାନ୍ତ : ଆମକୁ ବି ସେ ଖାଇବାକୁ ଡାକିଛନ୍ତି ହେଲେ ଦେଖୁଛି ତୁ ହେଉଛୁ ଅସଲ ସୁବିଧା ବାଦି। କ'ଣ ଗୋଟେ ଠିକ୍ କଲା ବେଳକୁ ତୁ ଖସିଯିବାକୁ ବାହାରି ପଡୁଛୁ।

ପ୍ରଫୁଲ : ବାପାଙ୍କୁ ତୁ କିଛି କହିବୁନି, ଆମେ ତୋ ଲାଗି କାହିଁକି ପଦାରେ ପଡିବୁ। ଭାଗ ନେଲା ବେଳକୁ ନବୁନାନାହିଁ ? ଉଠୁଛୁ କୁଆଡେ ବସ।

ପ୍ରଣବ : ତୁମେ ମାନେ ଯାହା କହିବ ମୁଁ ସବୁ ମନିନେବି ବୋଲି କହିଛି। କିନ୍ତୁ ବାପାଙ୍କୁ ପାଗଳ ବୋଲି ଘୋଷଣା କରିବାଟା ମୋତେ ଭଲ ଲାଗୁନି..।

କ୍ଷେତ୍ର : ଓଃ. ଆମେ କ'ଣ ସେକଥା କଲେଣି । ମାନେ legal action ପାଇଁ ଏମିତି ହେଇପାରିବ ବୋଲି କହୁଥିଲି।

ପ୍ରଫୁଲ : ଆଉ ବର୍ତ୍ତମାନ ପାଇଁ କ'ଣ ଅନ୍ୟବାଟ ହେଇପାରିବ କହୁ ନାହାଁନ୍ତି ବାବା।

କ୍ଷେତ୍ର : ଦେଖ ତୁମ ବାପାଙ୍କ action check କରିବାକୁ ଯା ଛଡା ଆଉ ଗୋଟେ କଥା କରାଯାଇ ପାରେ।

ପ୍ରଶାନ୍ତ : କ'ଣ ସେଇଟା କହୁ ନାହାନ୍ତି।

କ୍ଷେତ୍ର : ଗୋକୁଳି ଟୋକାଟା ପ୍ରକୃତରେ ତୁମ ବାପାଙ୍କ ମୁଣ୍ଡକୁ ଖାଇ ବସିଛି। ତାକୁ ଯଦି ବାପାଙ୍କ ପାଖରୁ ଅଲଗା କରାଯାଇ ପାରନ୍ତା ଅନ୍ତତଃ further କିଛି ବରବାଦରୁ ମୁକ୍ତି ପାଆନ୍ତ।

ପ୍ରଫୁଲ : ତାକୁ ବାପାଙ୍କ ପାଖରୁ ଦୂରେଇ ଦେଇ ହେବ। କିନ୍ତୁ ଉତ୍କଳ ଚେତନା ନାଁରେ ଯେଉଁ ଜମିଗ ଚାଲିଯାଇଛି....ସେଇଟା କ'ଣ ଫେରି ପାଇ ପାରିବୁ।

କ୍ଷେତ୍ର : ସେକଥା ମୋ ଉପରେ ଛାଡିଦିଅ। ତା'ର ବ୍ୟବସ୍ଥା ମୁଁ କରିଦେଲିଣି, ତୁମେ ଜାଗା ପଛପାଖରେ ଉପର ସାଇ ବାଲାଙ୍କର ଖଣ୍ଡେ କୋଠ ଜମି ଅଛି। ତାଙ୍କୁ ମୁଁ କହିଦେଲିଣି ସେମାନେ ଠିକ ସମୟରେ ଗଣ୍ଡଗୋଳ ଆରମ୍ଭ କରିଦେଲେ ସବୁ ଫସର ଫାଟି ଯିବ।

ପ୍ରଫୁଲ : ସତେ.... । (ସମସ୍ତେ ପରସ୍ପରକୁ ଚହିଁ ହସନ୍ତି)

(ହଟ ଗୋଟିଏ ଟ୍ରେରେ ଚା, ଇତ୍ୟାଦି ନେଇ ଆସେ )

ହଟ : (ପ୍ରଫୁଲଙ୍କୁ) ଆଜ୍ଞା ଆପଣଙ୍କୁ ଜଣେ କିଏ ସୌରଭ ବାବୁ ଖୋଜୁଛନ୍ତି।

ପ୍ରଫୁଲ : ସୌରଭ ଏଠି ଆସି ପହଞ୍ଚି ଗଲାଣି।

ପ୍ରଶାନ୍ତ : ଆମେ ସବୁ ଏଠି ଅଛୁ ବୋଲି କେମିତି ସେ ଜାଣିଲା।

ପ୍ରଫୁଲ : ଗାଁକୁ ଆସିବା ବୋଲି ତାକୁତ ଆମେ ଲେଖିନଥିଲେ କିନ୍ତୁ ଠିକ ବାସନା ବାରି ବାରି ଯେମିତି ଚାଲିଆସିଲା- ସେମିତି ବାସନା ବାରି ବାରି ଏଠି ଆସି ପହଞ୍ଚି ଗଲା।

ପ୍ରଶାନ୍ତ : ଇଡିଏଟ କଉଠିକାର।

ପ୍ରଫୁଲ : ମୁଁ ଯାହା ଭାବୁଛି spying କରିବା ପାଇଁ ଏଠିକି ଆସିଛି।

(ସୌରଭ ପ୍ରବେଶ କରେ କ୍ଷେତ୍ରମୋହନକୁ ନମସ୍କାର କରେ)

ସୌରଭ : ଆପଣମାନେ ସମସ୍ତେ ଏଇଠି ଅଛନ୍ତି ସେଠି ଅମର ମଉସା ଆପଣମାନଙ୍କୁ ଅପେକ୍ଷା କରି ବସିଛନ୍ତି।

ପ୍ରଣବ : ମୁଁ କହୁନଥିଲି ମୋର ତାଙ୍କ ଘରକୁ ଯିବାକୁ ଅଛି।

ସୌରଭ : ନା' ସେ ସମସ୍ତେ ଯିବାକୁ ନିମନ୍ତ୍ରଣ କରିଛନ୍ତି।

ପ୍ରଶାନ୍ତ : ସେ କୁହନ୍ତୁ କି ନାହିଁ ତୁମେ କିନ୍ତୁ ସୌରଭ ତାଙ୍କପାଇଁ ବହୁତ ପରିଶ୍ରମ କରୁଛ। ହଁ କଲେଜରୁ ଛୁଟିନେଇ ଯେତେବେଳେ ଶଶୁର ଘରେ କଟଉଛ.....କିଛିତ ହେଲେ କାମ କରିବାକୁ ହେବ।

ସୌରଭ : ମାନେ.......ମୁଁତ କିଛି ବୁଝିପାରୁନି।

ପ୍ରଫୁଲ : ଯିଏ ବୁଡି ବୁଡି ପାଣି ପିଏ ସେ କ'ଣ ଏସବୁ କଥା ବୁଝିପାରେ।

(ପ୍ରଫୁଲ ପ୍ରଶାନ୍ତ ହସିଉଠନ୍ତି)

ସୌରଭ : ଆପଣମାନେ ତା'ହେଲେ ଯିବେନି, ମୁଁ ଯାଉଛି।

ପ୍ରଣବ : ମୁଁ ବି ଯାଉଛି ଭାଇ। ରାଜଶ୍ରୀକୁ ପୁଣି ନବାକୁ ହେବ।

ପ୍ରଶାନ୍ତ : ତୁମେମାନେ ଚାଲ ଆମେ ଯାଉଛୁ।

(ସୌରଭ ଓ ପ୍ରଣବ ଚାଲିଯାଆନ୍ତି । ହଟ ଖାଲିକପ ଇତ୍ୟାଦି ନେଇ ଚାଲିଯାଏ)

ପ୍ରଫୁଲ : ଆପଣ ଆମ ପାଇଁ କିଛି ଗୋଟେ କରନ୍ତୁ ବାବା । ମୁଁ ଦେଖୁଛି ଆମେତ ଗାଁକୁ ଆସିପାରୁନୁ ଏଇ ସୁଯୋଗରେ ତାଙ୍କ ଝିଅ ଜ୍ୱାଇଁ ସବୁକିଛି ମାରିନେବାରେ ବ୍ୟସ୍ତ ।

କ୍ଷେତ୍ର : ତୁମେମାନେ ଯଦି ମୋ ସହିତ ସଂପର୍କ ରଖି କାମ କରିବ ତାହେଲେ ସବୁକିଛି ଠିକ କରିଦେବି ।

ପ୍ରଶାନ୍ତ : ଆମେତ ଆଉ ଆଠ-ଦଶ ଦିନ ରହିବୁ ଯା ଭିତରେ କିଛି ହେଇପାରିବ ?

କ୍ଷେତ୍ର : ଦେଇପାରିବ ସବୁ ଦେଇପାରିବ । କୌଣସି କାମରେ ତର ତର ହେଲେ ତା result ଭଲ ହୁଏନି । slow & steady wins the race .

ପ୍ରଫୁଲ : ଆପଣଙ୍କୁ ଆମେ ବାପାଙ୍କ କଥା ତାହେଲେ ଛାଡିଦେଲୁ ।

କ୍ଷେତ୍ର : ତୁମେ ଦେଖିବ, ଏଇ କିଛିଦିନ ଭିତରେ ସେ ଗାଁଛାଡି ତୁମ ପାଖକୁ ପଳେଇ ଯିବାକୁ ବାଟ ପାଇବେନି ।

ପ୍ରଶାନ୍ତ : ଆଉ ଗୋଟେ ବୁଦ୍ଧି କହିବେ ମଉସା....ବାପା ଦିନରାତି ସୁନ୍ଧୁକ ଚାବିଟା ଧରି ବୁଲୁଛନ୍ତି । ସେଇଟା କେମିତି ଟିକିଏ ହାତକୁ ଆସିଲେ ତା' ଭିତରେ ଅନ୍ତତଃ କ'ଣ କ'ଣ ଅଛି ଜାଣିଥାନ୍ତୁ । ଶୁଣୁଚୁ କେକେବାପାଙ୍କ ଅମଳରୁ ସେଥିରେ ଗୁଡେ ସୁନା ମୋହର ରଖାଯାଇଛି ।

କ୍ଷେତ୍ର : ଗାଁ ସାରା ସମସ୍ତେ ଜାଣନ୍ତି । ତୁମ ଗୋସେଁ କେକେବାପା ମାଟିତଳୁ ସୁନା ମୋହର ଭର୍ତ୍ତି ଗରାଟେ ପାଇଥିଲେ ।

ପ୍ରଫୁଲ : କିଛି କରିହେବ ବାପା । ଏଠି ଏତେ ଦିନ ରହିଲୁ ଖାଲିହାତରେ ଫେରିଲେ ଘରେ ଅଶାନ୍ତି ସୃଷ୍ଟିହେବ । ଆପଣ ଆପଣଙ୍କ ଝିଅ କଥା ଜାଣନ୍ତି ।

ପ୍ରଶାନ୍ତ : କିଛି ଗୋଟେ ଆଇଡିଆ ଦିଅନ୍ତୁ ।

କ୍ଷେତ୍ର : (ହସି) ଦେଖୁଛି ମାଧବ ତୁମକୁ ପାଠଶାଠ ପଢେଇ ଖାଲି ମଣିଷ କରିଛି ସିନା ଟିକିଏ ସାଂସାରିକ ବୁଦ୍ଧି ଦେଇନି।

ପ୍ରଶାନ୍ତ : ମାନେ।

ପ୍ରଫୁଲ :

କ୍ଷେତ୍ର : ମଣିଷ ନିଶା ବଳରେ ମହବଳ ବାଘ ପାଟିରୁ ରୋଗାଦାନ୍ତ କାଢି ଦେଇ ପାରୁଛି। ତୁମେମାନେ ତୁମ ବାପାଙ୍କ ପାଖରୁ ଚାବିଟା ଆଣିପାରିବନି। ବୁଝୁଛତ........?

(ପ୍ରଶାନ୍ତ ଓ ପ୍ରଫୁଲ ପରସ୍ପରକୁ ଚାହିଁ ମୁରୁକି ହସା ଦିଅନ୍ତି)

କ୍ଷେତ୍ର : କିନ୍ତୁ ସାବଧାନ..........ଟିକିଏ ବେ କାଇଦା ହେଇଗଲେ ଜୀବନଟା ଚାଲିଯିବାର ସଂଭାବନା ଅଛ। strike the iron when it is hot.

ପ୍ରଶାନ୍ତ : ମାନେ ?

କ୍ଷେତ୍ର : If you strike the same when it is not hot then there is every possibility of breaking off your own hammer understand......?

(ପ୍ରଶାନ୍ତ, ପ୍ରଫୁଲ, କ୍ଷେତ୍ର ମୋହନଙ୍କ ମୁହଁକୁ ବୋକାଙ୍କ ଭଳି ଚାହିଁ ରହିଥାନ୍ତି)



# ଭାଗ-୯

(ମାଧବବାବୁଙ୍କ ଡ୍ରଇଁରୁମ। ରାଜଶ୍ରୀ ଗୋଟିଏ ଗିନାରେ ପିଠଉ ଧରି ଝୋଟି ଆଙ୍କିଚାଲିଛି। ତା'କଣ୍ଠରୁ ଗୁଣୁ ଗୁଣୁ ସ୍ୱରରେ ଗୋଟିଏ ଓଡିଶୀ ଶୁଣାଯାଉଛି। ଅନ୍ଧ ଓସ୍ତାଦ ପଶିଆସିଛି।)

ଅନ୍ଧ : କିଏ ସାନବୋହୂ ଗାଉଛ ନା ମା ? ବନ୍ଦ କଲୁ କାହିଁକି ? ଗାଅ...।

ରାଜଶ୍ରୀ : ନା' ମଉସା ମୋତେ ଗୀତ ଗାଇ ଆସେନା। ଆପଣ କେତେ ଗୀତ ଗାଉଛନ୍ତି। ସେଥିରୁ ପଦେ ମନେ ରଖିଥିଲି।

ଅନ୍ଧ : ତୋ କଣ୍ଠଟି ବହୁତ ମିଠା- ଗା ଆଉ ପଦେ ଗା।

ରାଜଶ୍ରୀ : ଆଉ ଜାଣିନି-ଆପଣ ଗାଆନ୍ତୁ।

ଅନ୍ଧ : ଏବେ ତୁ କ'ଣ ଗୋଟେ କାମ କରୁଛୁ ବୋଲି ମନେହେଉଚି।

ରାଜଶ୍ରୀ : ଓଡିଆ ଘରେ କେମିତି ଚିତା ଝୋଟି ଦିଆଯାଏ ଶିଖୁଛି।

ଅନ୍ଧ : ଓଃ କାଲି ପରା ମାଣବସା ଗୁରୁବାର। ଠିକ ଅଛି ତୁ ତୋ କାମ ସାର। ସମୟ ହେଲେ ମୋତେ ଡାକିଦେବୁ ସାଂଗ ହୋଇ ଗାଇଦେଲେ ବାକି ପଦ ଗୁଡା ଶିଖିଯିବୁ।

ରାଜଶ୍ରୀ : ଆପଣଙ୍କର କେତେବେଳେ ସମୟ ହେବ ମଉସା।

ଅନ୍ଧ : ମୋର ବେଳ ଅବେଳ କ'ଣ ସଂଧ୍ୟା ବେଳକୁ ଗାଁରେ ଦି ଘଣ୍ଟା କିର୍ତ୍ତନ ଶିଖାଉଛି। ଦିନ ସାରା ବସିଛି।

ରାଜଶ୍ରୀ : ଠିକ୍ ଅଛି ମୁଁ ଡକେଇବି।

(ଅନ୍ଧ ଓସ୍ତାଦ ସେଇ ଗୀତଟି ଗୁଣୁ ଗୁଣୁ ହୋଇ ଚାଲି ଯାଆନ୍ତି । ପରେ ଗୋକୁଳି ଆସେ । )

ରାଜଶ୍ରୀ : ହେଇ ଦେଖିକରି ଚାଲ । ମୋ ଝୋଟି ଖରାପ ହେଇଯିବ ।

ଗୋକୁଳି : ବାଃ ଆପଣ ତ ଯେ କୌଣସି ଓଡିଆ ଘରର ବୋହୂକୁ ବଳିଯିବେ ଖୁଡି । ଏସବୁ କାହା ପାଖରୁ ଶିଖିଲେ ?

ରାଜଶ୍ରୀ : ଶିଖେଇ ଦେବାକୁ କ'ଣ ମଣିଷ ଅଭାବ । ଅମର ମଉସାଙ୍କ ସାନ ବୋହୂ ଶିଖେଇ ଦେଇଛନ୍ତି ।

ଗୋକୁଳି : ଆସୁ ବା ନଆସୁ । ଓଡିଆ ଘରର ବୋହୂ ହେଇଛି ମାନେ I must know the culture under estimate କରିଦେବନି ।

ଗୋକୁଳି : ଆପଣ ଠିକ ବୁଝିଛନ୍ତି ଖୁଡି । ଗୋଟେ କୋଉଠି ପଡିଥିଲି ଝିଅମାନେ ବାହାହେଇଗଲେ ଶଶୁର ଘରର ଗୋତ୍ରକୁ ଆଦରି ନିଅନ୍ତି ଆଉ ତୁମେ ଯେମିତି ଆମ culture ଆଉ ରତିରିବାଜ କୁ ଆପଣେଇ ନେଲଣଇ । ତାର ତୁଳନା ନାହିଁ । ଆଛା ବର୍ଷା କାହିଁ ଦେଖାଯାଉନି । ତାକୁ କେତେଟା ବ୍ୟାନର ଲେଖିବାକୁ ଦେଇଥିଲି ଯେ ।

ରାଜଶ୍ରୀ : ହଁ ତୁମ ବ୍ୟାନର କାମ ସାରୁ ସାରୁ ତାଙ୍କୁ କାଲି ରାତି ଦିଇଟା ହେଇଗଲା । ସକାଳୁ ସକାଳୁ ଫୁଲମାଳ କରିବାରେ ଲାଗିଯାଇଛନ୍ତି ।

ଗୋକୁଳି : ଫୁଲ ମାଳ କ'ଣ ହେବ ।

ରାଜଶ୍ରୀ : ତୁମେ ମାନେ କୁଆଡେ କ୍ୟାପିଟାଲ ଯାଇ କ'ଣ ଗୋଟେ ଆନ୍ଦୋଳନ କରିବ ।

ଗୋକୁଳି : ଆମର ଏଠିକାର ଇସ୍ପାତ କାରଖାନା ଅନ୍ୟ ଯାଗାକୁ ଉଠି ଯିବାକୁ ଶୁଣାଯାଉଛି । ସେଇଥି ପାଇଁ ପ୍ରତିବାଦ ଜଣାଇବାକୁ ଯିବୁ ।

ରାଜଶ୍ରୀ : ଠିକ ଅଛି ତୁମେ ଥାଅ, ମୁଁ ତାଙ୍କୁ ଡାକି ଦେଉଛି ।

(ରାଜଶ୍ରୀ ଚାଲିଯାଏ । ଗୋକୁଳି ସୋଫା ଉପରେ ବସିଯାଏ । ପ୍ରଶାନ୍ତ ଓ ପ୍ରଫୁଲ ବାହାରୁ ଆସନ୍ତି ।)

ପ୍ରଫୁଲ : ଏତେବେଳେ କୁଆଡେ ଗୋକୁଳି ।

ଗୋକୁଳି : ଗତେ ବ୍ୟାନର ଲେଖିବାକୁ ଦେଇଥିଲିଯେ...।

ପ୍ରଫୁଲ : ସେଇ ବ୍ୟାନର ବାହାନାରେ ବର୍ଷା ପାଖକୁ ଆସିଥିଲ। ଆଚ୍ଛା ବର୍ଷା ଛଡା ବ୍ୟାନର ଲେଖିବାକୁ ଏଠି ଅନ୍ୟ କେହିନାହାଁନ୍ତି।

ଗୋକୁଳି : ଆଜ୍ଞା ।

ପ୍ରଶାନ୍ତ : ବାପାଙ୍କର ସରଳ ବିଶ୍ୱାସର ସୁଯୋଗ ନେଇ ତୁମେ ବହୁତ ଆଗେଇ ଯାଉଛ ଗୋକୁଳି। you should know your limitation.।

ଗୋକୁଳି : ଦାଦା ଆପଣ ଏସବୁ କ'ଣ କହୁଛନ୍ତି।

ପ୍ରଫୁଲ : ପ୍ରଶାନ୍ତ ଯାହା କହୁଛି ତୁମେ ଭଲଭାବରେ ଜାଣ। ବିଲେଇ ଆଖି ବୁଜି ବୁଜି ଖିର ପିଇ ଭାବେ କେହିଦେଖୁ ନାହାଁନ୍ତ।

ପ୍ରଶାନ୍ତ : ସକାଳ ସଂଧ୍ୟା ଦିନରାତି ଏଇଟାକୁ ସମସ୍ତେ କୁଆହାଉସ କରିଦେଇଛନ୍ତି। ଲୋକ ଲଜ୍ଜାବୋଲି ଗୋଟେ ଜିନିଷ ଅଛିନା ନାହିଁ ?

ଗୋକୁଳି : ଦାଦା ଆପଣ ମାନେ ମୋତେ ବହୁତ କହି ଗଲେଣି, କିନ୍ତୁ ମୋ ଦୋଷଟା କ'ଣ କହିଦିଅନ୍ତୁ। ଯଦି କିଛି ଭୂଲ କରିଥାଏ...ସୁଧାରି ନେବି।

ପ୍ରଫୁଲ : ତୁମେ ସୁଧାରି ନେଲେ ଆମେ ଯାହା ହରେଇ ଦେଲୁଣି ସଇଟା କ'ଣ ଫେରି ପାଇ ପାରିବୁ ?

ଗୋକୁଳି : ମାନେ ?

ପ୍ରଶାନ୍ତ : ଭାଇ ଆପଣଙ୍କର କିଛି ସଫେଇ ଦେବା ଦରକାର ନାହିଁ।

ଗୋକୁଳି : ଠିକ ଅଛି ଦାଦା- ମୁଁ ଚାଲିଯାଉଛି। ହେଲେ କହିଯାଉଛି ଆପଣ ମୋ ବିଷୟରେ ଯେଉଁ ଧାରଣା କରିଛନ୍ତି ମୁଁ ତା' ନୁହେଁ। ମାଧବ ଜେଜେଙ୍କ ପ୍ରତି ସମ୍ମାନ ଯୋଗୁଁ ବେଳ ଅବେଳ ଏଠିକି ଚାଲିଆସେ। ମୋର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ।

(ଗୋକୁଳି ଚାଲିଯାଏ)

ପ୍ରଫୁଲ : ଭାଷଣ ଶୁଣାଉଛି। ବାପା ଯାକୁ ମୁଣ୍ଡରେ ବସାଇଛନ୍ତି ବୋଲି ଇଏ ଏଠି ହିରୋ ହେଇଯାଇଛି।

ପ୍ରଶାନ୍ତ : ଯାହା ଶୁଣାଇଛି- ଆଉ ଦିନେ ଏଠି ପାଦ ଦେବନି।

(ଦୁହେଁ ପରସ୍ପରକୁ ଚାହିଁ ମୁରୁକି ହସା ଦିଅନ୍ତି । ବର୍ଷା ହାତରେ ଫୁଲ ମାଳ ଆଉ ବ୍ୟାନର ଧରି ଆସେ)

ବର୍ଷା : ଦାଦା ଗୋକୁଳି ଭାଇ କୁଆଡେ ଗଲେ ?

ପ୍ରଫୁଲ : ଗୋକୁଳି ପାଖରେ ତୋର କ'ଣ କାମ ?

ବର୍ଷା : ଏ ବ୍ୟାନର ଗୁଡାକ ନେଇଯିବା କଥା ।

ପ୍ରଶାନ୍ତ : ଏଗୁଡା ହଟ ହାତରେ ପଠେଇ ଦେ ।

ବର୍ଷା : ସେମାନେ ପିକେଟିଂ କରିବାକୁ ରାଜଧାନୀ ଯିବେତ । ମୁଁ ନିଜେ ଯାଇ ଦେଇ ଆସୁଛି । ସେମାନେ ଗାଁ କୋଠଘର ପାଖରେ ଅପେକ୍ଷା କରିଥିବେ ।

ପ୍ରଫୁଲ : ସେଠିକି ତୋର ଯିବା କ'ଣ ଦରକାର ।

ବର୍ଷା : ସେଠି କେଜେ ଅଛନ୍ତି ମୁଁ ଯିବି ଆଉ ଆସିବି ।

ପ୍ରଶାନ୍ତ : ବଡମାନଙ୍କ କଥା ଉପରେ ବେଶତ କଥାବାର୍ତ୍ତା କରୁଛୁ ।

ପ୍ରଫୁଲ : ତୁମେ କେଜେ ନାତୁଣୀ ମିଶି ଯେତେସବୁ ଗୋଳମାଳ କରୁଛ । ମଣିଷ ଗାଁ ଭିତରେ ମୁଣ୍ଡଟେକି ଚାଲିପାରୁନି ।

ବର୍ଷା : ଦାଦା..।

ପ୍ରଫୁଲ : ଗୋକୁଳି ଆଉ ତୋ ନାଁ ନେଇ କାନ୍ଥ ବାଡରେ ଯାହାସବୁ ଲେଖା ହେଇଛି ମଣିଷ ତାକୁ ପଢି ପାରିବନି ।

ପ୍ରଶାନ୍ତ : ସେ ଗୁଡାକ ଚିରା ଚିରି କରି ଆମେ ଫେରୁଛୁ ।

ପ୍ରଶାନ୍ତ : ବଟ ବଟ । (ବଟ ଆସେ)ନେ ଏଗୁଡାକ ସେମାନଙ୍କୁ ଦେଇଦେବୁ ।

ବଟ : ଗୋକୁଳି ବାବୁ ସାଂଗମାନେ ଘୋଉଠୁ ବାହାରୁଛନ୍ତି ସେଠି ଦେବି ତ ?

ପ୍ରଫୁଲ : ହଁ...। (ବଟ ବ୍ୟାନର ଫୁଲମାଳ ନେଇ ଚାଲିଯାଏ)

ପ୍ରଶାନ୍ତ : ଦେଖ ବର୍ଷା ଆମେ ତୋ ବାପ ସମାନ । ତୋ ମଙ୍ଗଳପାଇଁ କହୁଛୁ । ସେ ଗୋକୁଳି ସହିତ ଏତେଟା ମିଶିବା ଟା ଠିକ ନୁହେଁ । ଯେତେ ଯାହା କଲେବି ସେ ଟୋକା କ'ଣ ଆମର ସମାସ୍କନ୍ଦ ।

ପ୍ରଫୁଲ୍ଲ : ତୋର ଏବେ ବୟସ ହୋଇନି। ତୁ ପରେ ବୁଝିବୁ ଆମେ ଠିକ କହୁଛୁ ନା ଭୁଲ କହୁଛୁ।

(ଦୂରରୁ ଗାଁ ପିଲାଙ୍କ ମିଳିତ କଣ୍ଠରୁ ସ୍ଲୋଗାନ ଶୁଣାଯାଏ। "ଇସ୍ପାତ କାରଖାନା ଆମର ଦାବି" ସ୍ଲୋଗାନ ସହିତା ଗାଡି ଚାଲିଯିବା ସବଦ୍ ଦୂରେଇ ଯାଏ। ବର୍ଷା ସେମିତି କାନ୍ଦୁଥାଏ। ରାଜଶ୍ରୀ ଆସନ୍ତି ତାଙ୍କୁ ଦେଖି ବର୍ଷା ଛାତିରେ ମୁଣ୍ଡରଖି ଆହୁରି ଅଧିକ ଯୋରରେ ସକେଇ ଉଠେ। ଅନ୍ଧ ଓସ୍ତାଦଙ୍କ କଣ୍ଠରୁ ଗୀତଟିଏ ଭାସି ଆସେ। ଯାହାର ଅର୍ଥ ରାଧା କଳଙ୍କିନି ବୋଲି ସମସ୍ତେ ଜାଣିଲେ।)

(ଅନ୍ଧାର ଭିତରୁ ପ୍ରବେଶକଙ୍କ କଣ୍ଠରୁ ଶୁଣାଯାଏ ନିମ୍ନ ଘୋଷଣାଟି)

ପ୍ରବେଶକ : ଗୋକୁଳି ଆଉ ତା ସାଂଗମାନଙ୍କର ସ୍ୱର ଦିଲ୍ଲୀପର୍ଯ୍ୟନ୍ତ ପହଞ୍ଚି ପାରିଲାନି। ଇସ୍ପାତ କାରଖାନା ବାହାର ରାଜ୍ୟକୁ ଉଠିଗଲା। ଏଥିନେଇ ଓଡିଶା ଭିତରେ ବିଶେଷ ଆଲୋଡନ ସୃଷ୍ଟି ହେଲାନି। ସାନ ପୁଅ ପ୍ରଣବ ରାଜଶ୍ରୀ ଓ ବର୍ଷାକୁ ନେଇ ପୁରୀ କୋଣାର୍କ ଆଦି ସ୍ଥାନ ବୁଲିବାକୁ ବାହାରି ଗଲେ। ବାପାଙ୍କୁ ବାଟକୁ ଆଣିବାର ଭାର କ୍ଷେତ୍ରବାସି ବାବୁଙ୍କୁ ଅର୍ପଣ କରି ପ୍ରଫୁଲ୍ଲ ଓ ପ୍ରଶାନ୍ତ ବାବୁ ଯିବାକୁ ପ୍ରସ୍ତୁତ ହେଲେ.....।



# ଭାଗ - ୧୦

(ମାଧବବାବୁଙ୍କ ଡ୍ରଇଁଗ୍ରୁମ । ପ୍ରଫୁଲ୍ଲ ବାବୁ ସୋଫା ଉପରେ ବସି ଗୋଟେ ଡାଇରି ଦେଖୁଛନ୍ତି । ବଟ ଗୋଟେ ଗୋଟେ ଆଟାଚି, ଏୟାର ବ୍ୟାଗ ନେଇ ବାହାର ବାରଣ୍ଡାରେ ରଖିଦେଇ ଆସୁଛି ।)

ପ୍ରଫୁଲ୍ଲ : ବଟ

ବଟ : ଆଜ୍ଞା, ସବୁ ସାମାନ ବାହାର ବାରଣ୍ଡାରେ ରଖିଦେଲି । ଗାଡି ଆସିବତ ଫଟାଫଟ ଲୋଡହୋଇ ଷ୍ଟେସନ ଚାଲିବ ।

(ପ୍ରଫୁଲ୍ଲ ଗୋଟେ ୧୦୦ ଟଙ୍କିଆ ନୋଟ ବାହାର କରି)

ପ୍ରଫୁଲ୍ଲ : ନେ ଏଇଟା ରଖ ।

ବଟ : ଆଜ୍ଞା, ଏଇଟା କ'ଣ ହେବ । ମୋ ଚାକିରୀ କଥାଟା ବୁଝିବେ ।

ପ୍ରଫୁଲ୍ଲ : ହଁ ସେକଥା ମୁଁ ବୁଝୁଛି ତୁ ଏଇଟା ରଖ । ବାପାଙ୍କ କଥା ଟିକି ବୁଝାବୁଝି କରୁଥିବୁ । ନେ ।

(ବଟ ନୋଟ ନେଇଛି । ବାହାରୁ ଆସିଛି ପ୍ରଶାନ୍ତ ।)

ପ୍ରଶାନ୍ତ : ଭାଇ ସେ ଗାଡି ଏ ପର୍ଯ୍ୟନ୍ତ ଫେରିଲାନି ।

ପ୍ରଫୁଲ୍ଲ : ସେ ଟାକ୍ସିଟା ରାତି ନଟା ସୁଦ୍ଧା ଫେରିବା କଥା । ତା ମାଲିକ କ'ଣ କହିଲା ।

ପ୍ରଶାନ୍ତ : କହିଲା ଆମ ଟ୍ରେନ ଯାଇ ରାତି ତିନିଟାରେ । ଗାଡି ଆସିଲା ମାତ୍ରେ ପଠାଇ ଦେବ ।

ପ୍ରଫୁଲ୍ଲ : ଏଠୁ ଚଞ୍ଚଳ ଯାଇ Waiting room ରେ rest ନେବାକୁ ଭାବିଥିଲେ ସେକଥା ଆଉ ହେଇ ପାରିବନି ।

ପ୍ରଶାନ୍ତ : ବଟ, ଡାନି କୋଉଠି ?

ବଟ : ସେପଟେ ଭିଡିଓ ଗେମ ଖେଳୁଛନ୍ତି ।

ପ୍ରଶାନ୍ତ : ଠିକ ଅଛି । ମୋ ଜିନିଷ ଗୁଡା ବାହାରକୁ ଦେଇ ଦେଉନ୍ତୁ ନା ?

ବଟ : ତିନିଟା ବ୍ୟାଗ ଆପଣଙ୍କର ରଖିଦେଇଛି ।

ପ୍ରଶାନ୍ତ : ଠିକ ଅଛି । ତୁ ଆମ ସହିତ ଷ୍ଟେସନ ଯିବାକୁ ରେଡି ହେଇଥିବୁ ।

ବଟ : ଆଜ୍ଞା ।

ପ୍ରଫୁଲ୍ଲ : ତୁ ଗୋଟେ କାମ କର ବଟ । ସେ କାର ମାଲିକ ଘରକୁ ଚାଲିଯିବୁ ଯେମିତି କାର ପହଞ୍ଚିବ ଏଠିକି ନେଇ ଆସିବୁ ।

ବଟ : ଯିବିଯେ ଆଜ୍ଞା ଏଠି କାମ ଶେଷ କରିଦିଏ । ରାତିରେ ପୁଣି ଜ୍ୱୋଇଁବାବୁ କଟକରୁ ଫେରିବା କଥା ।

ପ୍ରଶାନ୍ତ : ସେ କ'ଣ ଆଉ ଫେରିବ । ରାତି ବସତ ପହଞ୍ଚି ଯିବଣି ।

ବଟ : ସେ ଆସନ୍ତୁ ବା ନଆସନ୍ତୁ ତାଙ୍କ ପାଇଁ ଖାଇବାକୁ ରଖିଦେଇ ଯାଉଛି କାମ ସାରିବି ।

ପ୍ରଶାନ୍ତ : ଆରେ ମୋ ଲାଗି କପଟେ ଚା' କରିଦେଇ ପାରିବୁ ।

ବଟ : ହଉ ।

ପ୍ରଫୁଲ୍ଲ : ବାପାଙ୍କୁ ଦୁଧ ଦେଲା ବେଳେ ମୋତେ ବି ଗୋଟେ ଗ୍ଲାସ ଦେବୁ ।

ବଟ : ଏଇ ସଂଗେ ସଂଗେ ନେଇ ଆସୁଛି । (ବଟ ଚାଲିଯାଏ) ପ୍ରଫୁଲ୍ଲ ହଠାତ ଚଞ୍ଚଳ ହୋଇ ଉଠନ୍ତି ।

ପ୍ରଫୁଲ୍ଲ : ବଟିକା ଗୁଡାକ ଭଲ ଭାବରେ ଗୁଣ୍ଡ କରିଛୁ ତ ?

ପ୍ରଶାନ୍ତ : ମଉସା ହଟ ହାତରେ ସେ କାମ କରାଇ ଦେଇଛନ୍ତି ।

ପ୍ରଫୁଲ୍ଲ : ଦେଖି । (ପ୍ରଶାନ୍ତ କାଗଜ ଗୁଡିକ ଖୋଲି ଦେଖାନ୍ତି ।) ଏତେ ଗୁଡେ ଗୁଣ୍ଡ ବେଶୀ ହେଇଯିବନି ତ ?

ପ୍ରଶାନ୍ତ : କ୍ଷେତ୍ରବାସି ମଉସା କହିଲେ ଟିକିଏ ଅଧିକ ଦେଇଗଲେ ଅଧିକ ନିଦ

ହେଇଯିବ । କିନ୍ତୁ କମ ହେଲେ ମଝିରୁ ନିଦ ଭାଙ୍ଗିଗଲେ ସବୁ ଫସର ଫାଟି ଯାଇପାରେ ।

ପ୍ରଫୁଲ୍ଲ : ବଟକୁ ଟାକ୍ସି ଡାକିବା ନାଁରେ ପଠାଇ ଦେବା । ଘରେ କେହି ରହିବେନି । ଭଲ ମଉକା ମିଳିଯିବ ।

ପ୍ରଶାନ୍ତ : ହେଇ ବଟ ଆସିଲାଣି । ବଟଟା ନଥିଲେ ବାପା ବଡ ହଇରାଣ ହେଇ ଯାଆନ୍ତେ ଭାଇ ।

ପ୍ରଫୁଲ୍ଲ : ତା' ପାଇଁ ଗୋଟେ ଚାକିରୀ ଯୋଗାଡ କରି ତା ଋଣ ସୁଝିବାକୁ ପଡିବ । ମୁଁ ତ ଦେଖୁଛି ତୁ ବି ଦେଖୁ ଥିବୁ ।

(ବଟ ହାତରେ ଗୋଟିଏ ଟ୍ରେ ରେ ଦୁଇଟି ଦୁଧ ଗ୍ଲାସ , ଗୋଟିଏ କପ ଚା କପ ନେଇ ଆସେ )

ପ୍ରଫୁଲ୍ଲ : ଆରେ ଦିଟା ଗ୍ଲାସ ଦୁଧ କ'ଣ ?

ବଟ : ଆପଣଙ୍କର ଏଇ ଡାହାଣ ପାଖଟା ନିଅନ୍ତୁ । ଏ ପାଖଟା ବାପାଙ୍କର ଏଥିରେ ଚିନି ଦିଆହୋଇନି ।

ପ୍ରଫୁଲ୍ଲ : ତୋ ଚା' ନେ ପ୍ରଶାନ୍ତ । ସେ ପୁଣି ବାପାଙ୍କୁ ଦୁଧ ଦେଲେ ସେ ଶୋଇବେ ।

ପ୍ରଶାନ୍ତ : ହଁ ହଁ ତାଙ୍କର ରାଇଟ ଟାଇମରେ ଶୁଆ ରାଇଟ ଟାଇମରେ ଉଠା ।

(ପ୍ରଫୁଲ୍ଲ ଦୁଧ ଗ୍ଲାସ ନିଏ ପ୍ରଶାନ୍ତ ଚା' । ବଟ ଟ୍ରେ ନେଇ ଯାଏ ।)

ପ୍ରଶାନ୍ତ : ବଟ ।

ବଟ : ଆଜ୍ଞା ।

ପ୍ରଶାନ୍ତ : ଏଠିକି ଆସିଲୁ ।

ବଟ : (ଫେରି) କ'ଣ ଆଜ୍ଞା ?

ପ୍ରଶାନ୍ତ : ଆରେ ମୁଁ ଚାଲିଯାଉଛି ବୋଲି ବିନା ଚିନିରେ ଚା ଦେଇଛୁ ସିନା ।

ବଟ : ନାଇତ ଆଜ୍ଞା , ଚିନି ପକେଇଛି ।

ପ୍ରଶାନ୍ତ : ପକେଇଚୁ ତ ମିଠା କାହିଁ। ନେ ନିକେ ଦେଖ।

ବଟ : ନାଇଁ ଆଜ୍ଞା ଚିନି ନେଇ ଆସୁଛି।

(ବଟ ଟ୍ରେ ରଖି ଚାଲିଯାଏ। ପ୍ରଶାନ୍ତ କାଗଜ ପୁଡିଆ ବାହାର କରି ପ୍ରଫୁଲ୍ଲକୁ ଦିଏ )

ପ୍ରଶାନ୍ତ : ଭାଇ ଏ ପୁଡିଆ ବାପାଙ୍କ ଦୁଧରେ ମିଶାଇ ଦିଅ। ମୁଁ ବଟ ବାଟକୁ ଦେଖୁଛି। (ପ୍ରଫୁଲ ପୁଡିଆ ଖୋଲି ମିଶାଏ।)

ପ୍ରଶାନ୍ତ : ଆରେ ବଟ, ପାଣିଗ୍ଲାସଟେ ନେଇ ଆସିଥିବୁ।

(ପ୍ରଶାନ୍ତ ପାଣି ଗ୍ଲାସ କଥାଟା ଏତେ ଯୋରରେ କୁହେଯେ ପ୍ରଫୁଲ ଚମକି ଉଠେ। ସବୁ ଗୁଣ୍ଡ ଗ୍ଲାସରେ ପଡେ। ପରେ ପ୍ରଫୁଲ ତା ଦୁଧ ଗ୍ଲାସ ନେଇ ପିଏ।

ପରେ ପରେ ବଟ ଗୋଟେ ପାଣିଗ୍ଲାସ ଓ ଚିନି କପନେଇ ଆସେ। ପ୍ରଶାନ୍ତ ତା ରେ ଚିନି ଗୋଳି ପିଏ। ପଟ ଦୁଧ ଗ୍ଲାସ ନେଇ ଚାଲିଯାଏ।)



# ଭାଗ - ୧୧

(ମାଧବବାବୁଙ୍କ ବେଡ ରୁମ । ମାଧବବାବୁ ଗୋଟିଏ ବହି ପଢ଼ୁଛନ୍ତ । ବାହାରୁ ଆସିଛି ଡାନି । ସେ ଜେଜେଙ୍କୁ ନମସ୍କାର କରିଛି ।)

ମାଧବ : କିରେ କଥା କ'ଣ ?

ଡାନି : ଡ୍ୟାନି କହିଲେ ଆମେ ଏବେ ଷ୍ଟେସନ ଚାଲିଯିବୁ ।

ମାଧବ : ଏବେ ଚାଲିଯିବ ତୁମ ଟ୍ରେନ ଟାଇମ ତ ହେଇନି ।

ଡାନି : ତୁମେ ପରା ୧୦ଟା ବେଳକୁ ଶୋଇପଡିବ ।

ମାଧବ : ସେଇଥି ପାଇଁ ଆଗୁଆ ପ୍ରଣାମ କରି ବିଦାୟ ନେଇଯିବୁ । ତୁ ରାଉରକେଲା ଗଲେ ମୋ କଥା ମନେ ପକାଇବୁ ନା...?

ଡାନି : ହଁ ସବୁଦିନ ମନେ ପକେଇବି । ତୁମେ ତୁମେ ପ୍ରମିସ ରଖିବ ନା ?

ମାଧବ : ପ୍ରମିସ୍ ? କି ପ୍ରମିସ୍ ?

ଡାନି : ଏତେ ଚଞ୍ଚଳ ଭୁଲିଗଲ । ନା' ତୁମ ସଙ୍ଗରେ ମୁଁ କଥା ହେବିନି । କଟି ।

ମାଧବ : ଓଃ ମନେ ପଡିଲା- ଫରେନ କାର ପ୍ରମିସ୍ କଥା ।

ଡାନି : ଯେମିତି କଲଦି ।

ମାଧବ : ହଁ ନିଶ୍ଚୟ ନିଶ୍ଚୟ । ତୁ କିନ୍ତୁ ମନଦେଇ ପାଠ ପଢିବୁ ।

ଡାନି : ମୁଁ କଥା ଦେଉଛି କ୍ଲାସରେ ଫାଷ୍ଟ ହେବି । ତୁମେ ଆଗ ତୁମ ପ୍ରମିସ୍ ରଖ ଦେଖିବନି ।

ମାଧବ : ପ୍ରମିସ୍ ରଖିଲେ ମୁଁ ତ ଚାଲିଯିବି ଦେଖିବି କେମିତି ?

ଡାନି : (ଟିକିଏ ରହିଯାଇ) ଦେଖି ପାରିବ ଦେଖିପାରିବ । ମାମୀ କହୁଥିଲା ଯେଉଁମାନେ ମରିଯାଆନ୍ତି ଆକାଶରେ ଗୋଟେ ଗୋଟେ ତାରା ହୋଇ ଯାଆନ୍ତି । ଏଠି କ'ଣ ହେଉଛି ସବୁ ଦେଖିପାରନ୍ତି ।

ମାଧବ : ହଁ ହଁ ଠିକ କଥା-ମୁଁ ଭୁଲି ।ଯାଇଥିଲି ।

(ଝଟ ଦୁଧ ନେଇ ଆସେ)

ବଟ : ଡାକି ବାବୁ ଆସ, ଖାଇଲେ ଷ୍ଟେସନ ଯିବ।

(ବଟ ଦୁଧ ଗ୍ଲାସ ନେଇ ପାଖ ସୁନ୍ଦୁକ ଉପରେ ରଖେ)

ମାଧବ : ଟାକ୍ସି ଆସିଗଲାଣି କିରେ।

ବଟ : ନାଁ ଆଜ୍ଞା, ଏମାନଙ୍କୁ ଖାଇବାକୁ ଦେଇ ଗାଡି ମାଲିକ ଘରକୁ ଯିବି।

ମାଧବ : ସୌରଭ କଟକରୁ ମୋ ମେଡିସିନ ନେଇ ଫେରିବା କଥା ଆସିଲାଣି।

ବଟ : ବସ ଲେଟ ହେଇଛି କ'ଣ, ସେ ଆସିବେନି। ଆପଣଙ୍କର ମେଡିସିନ ସରିଯାଇଛି ନା।

ମାଧବ : ନା' ଅଛିଯେ ଆଉ ଦିନେ ଦୁଇ ଦିନ ଯିବ। ହଁ ଷ୍ଟେସନ ଯିବା ପୂର୍ବରୁ ତଳ ଘର ସବୁ ବନ୍ଦ କରିଯିବୁ।

(ଆସନ୍ତି ପ୍ରଫୁଲ୍ଲ ଆଉ ପ୍ରଶାନ୍ତ । ବଟ ଡାକିକୁ ନେଇ ଚାଲିଯାଏ।)

ମାଧବ : ଆରେ ଟାକ୍ସିପାଇଁ ତୁମେ ଆଡଭାନ୍ସ ଦେଇଛତ ?

ପ୍ରଶାନ୍ତ : ହଁ ସେ ଆସିଯିବ।

ପ୍ରଫୁଲ୍ଲ : ଆମେ ଚାଲିଯିବୁ ବାପା, ଆପଣ କିନ୍ତୁ ଗାଁର ଏତେ ସବୁ ଡାୟୀତ୍ୱ ନନେଇ ଟିକିଏ ରେଷ୍ଟ ନେଉଥିବେ।

ପ୍ରଶାନ୍ତ : ମଝିରେ କଟକ ଯାଇ ଡାକ୍ତର ପାଖରେ ଚେକ କରୁଥିବେ।

ମାଧବ : ଆରେ ମୋର ପିଲାଦିନରୁ ରେଲୁଲେଟଡ୍ ଲାଇଫ୍ ତୁମ ମାନଙ୍କ ପାଇଁ ମୋର ଚିନ୍ତା। ପ୍ରଫୁଲ୍ଲ ତ ଟିକିଏ କଥାରେ ନେଇଯିବ। ଆଉ ତୁ ଯଦି ଗୋଟେ କାମ କରୁଥିବୁ ଖିଆ ପିଆ ଭୁଲି ସେଇଥିରେ ଲାଗିଥିବୁ।

(ଦୁହେଁ ବାପାଙ୍କ ପାଦ ଧୂଳୀ ନିଅନ୍ତି)

ମାଧବ : ଯା' ଘରେ ପହଞ୍ଚୁ ପହଞ୍ଚୁ ଫୋନ୍ କରିବ।

(ପ୍ରଫୁଲ୍ଲ ପ୍ରଶାନ୍ତ ଚାଲିଯାଆନ୍ତି, ମାଧବବାବୁ ସମୟ ଦେଖି ବହି ପଡା ବନ୍ଦ କରନ୍ତି। ସେ ଦୁଧ ଗ୍ଲାସ ନେଇ ମୁହଁରେ ଲାଗାନ୍ତି।



# ଭାଗ - ୧୨

(ମାଧବବାବୁଙ୍କ ଡ୍ରଇଁ ରୁମ। ମାଧବବାବୁ ସୋଫା ଉପେର ଶୋଇଯାଇଛନ୍ତି। ପ୍ରଶାନ୍ତ ହାତ ଘଣ୍ଟାକୁ ଦେଖି ଅସ୍ଥିର ହୋଇ ବୁଲୁଛନ୍ତି। ବଟ ଆସିଛି )

ବଟ : ମୋ କାମ ଶେଷ। ଏଥର ସେ ଗାଡି ମାଲିକ ଘରକୁ ଯାଉଛି।

ପ୍ରଶାନ୍ତ : ଯିବା ପୂର୍ବରୁ ଉପରେ ଯାଇ ଦେଖିଆସ ବାପା ଶୋଇଛନ୍ତି ନା ଅନ୍ୟ କ'ଣ କରୁଛନ୍ତି। କ'ଣ ଦରକାର କରିପାରନ୍ତି।

ବଟ : କେଇଟା ସମୟ ହେଲାଣି କହୁନାହାଁନ୍ତି।

ପ୍ରଶାନ୍ତ : ଏଗାରଟା ।

ବଟ : ଏଗାରଟା ମାନେ ଆଉ ଉପରକୁ ଯିବା ଦରକାର ନାହିଁ। ପୁରା ଶୋଇଯିବେଣି। ତାଙ୍କ ଟାଇମ ହେଉଛି ଦଶଟା।

ପ୍ରଶାନ୍ତ : ଆରେ ଯା ଦେଖିଆସିବୁ। ତା'ପରେ ଗାଡି ଡାକି ଯିବୁ। ଯା।

(ବଟ ଚାଲିଯାଏ କିଛି ସମୟ ପରେ ଫେରିଆସେ)

ବଟ : ମୁଁ ଯାହା କହୁଥିଲି....କେକେ ପୁରା ନିଦରେ ଶୋଇଯାଇଛନ୍ତି।

ପ୍ରଶାନ୍ତ : ହଉ ଯା ଟାକ୍ସି ପହଁଞ୍ଚିଲା ମାତ୍ରେ ଧରିଆଣିବୁ।

(ବଟ ଚାଲିଯାଏ। ପ୍ରଶାନ୍ତ ପ୍ରଫୁଲ୍ଲକୁ ହାତ ମାରି ଉଠାନ୍ତି)

ପ୍ରଫୁଲ୍ଲ : (ମିଛ ନିଦରୁ ଉଠି) ଗଲା କିରେ।

ପ୍ରଶାନ୍ତ : ହଁ ସେ ଚାଲିଗଲାଣି। ତୁମେ ଆସ।

ପ୍ରଫୁଲ୍ଲ : ଯା ଏଇ ସାମନା ଦରଜାଟା ଭିତର ପଟୁ ଦେଇଦେ।

ପ୍ରଶାନ୍ତ : ଭିତରୁ ଦେଇଦେଲେ ବଟ ଆସିଲେ ସନ୍ଦେହ କରିପାରେ ।

ପ୍ରଫୁଲ : ସେ ଆସିବା ପୂର୍ବରୁ ଆମେ କାମ ଶେଷ କରିଦେବା । ମଝିରେ ଚାଲିଆସିରଲେ ସେ କବାଟ ବାଡାଇ ଡାକିବ । ଆମେ ପ୍ରସ୍ତୁତ ହେଇଯିବା ।

ପ୍ରଶାନ୍ତ : ଠିକ କଥା , କବାଟ ଖୋଲାଥିଲେ ସେ ପଶିଆସିପାରେ..... ।

(ପ୍ରଶାନ୍ତ ଯାଇ ବାହାର ଦରଜା ଦେଇ ଫେରେ)

ପ୍ରଫୁଲ : ଭଲ କରି ଦେଇଛୁ ତ ?

(ପ୍ରଶାନ୍ତ ମୁଣ୍ଡ ହଲାଇ ସମ୍ମତି ଜଣାଏ । ସେମାନେ ଉପରକୁ ଯାଆନ୍ତି ।)



## ଭାଗ - ୧୩

(ମାଧବବାବୁଙ୍କ ବେଡ ରୁମ । କେବଳ ଟେବୁଲ ଲ୍ୟାମ୍ପ ଜଳୁଛି । ପ୍ରଶାନ୍ତ ଆଉ ପ୍ରଫୁଲ ଯାଇ ପ୍ରଥମେ ଚବି ଖୋଜନ୍ତି । ପ୍ରଫୁଲ ମାଧବ ବାବୁଙ୍କ ଦେହରେ ହାତ ମାରେ ।)

ପ୍ରଫୁଲ : କିଛି ଅସୁବିଧା ନାହିଁ । ପୁରା ନିଦରେ ଶୋଇଯାଇଛନ୍ତି ।

ପ୍ରଶାନ୍ତ : ଠିକ ଅଛି ।

(ମୁଣ୍ଡ ପାଖରୁ ତକିଆ ତଳେ ଚାବି ବାହାର କରନ୍ତି । ଦୁହେଁ ଖୁସିରେ ହାତ ମିଳାନ୍ତି ପରେ ପରେ ସିନ୍ଧୁକ ଖୋଲିବାକୁ ଚେଷ୍ଟା କରନ୍ତି ।)



# ଭାଗ-୧୪

(ଆଲୋକ ଆସିବାରେ ଦେଖାଯାଏ । ପ୍ରଫୁଲ ଓ ପ୍ରଶାନ୍ତ ପୂର୍ବ ବର୍ଣ୍ଣିତ ଡ୍ରଇଁଗ୍ରୁମ ସୋଫା । ଉପରେ ଶୋଇ ପଡିଛନ୍ତି ।ବାହାରେ କାହାର ହର୍ଣ୍ଣ ଶୁଣାଯାଏ । ବଟ ଆସେ)

ବଟ : ଆଜ୍ଞା, ଗାଡି ଆସିଗଲା ଉଠନ୍ତୁ ଏଥର ।

ପ୍ରଫୁଲ : ତୁ ଏତେ ଡେରି କଲୁଯେ ?

ବଟ : ଗଡି ବାଲାକୁ ଆପଣ କୁଆଡେ ରାତି ଗୋଟାକ ବେଳକୁ ଆସିବାକୁ କହିଛନ୍ତି । ସେଇଥିପାଇଁ ସେ ଡେରି ଡେରି କରି ବାହାରିଲା ।

ପ୍ରଶାନ୍ତ : ଠିକ ଅଛି ତୁ ଜିନିଷ ଲଦାଲଦି କର । ମୁଁ ଡାନିକି ନେଇ ଆସୁଛି ।

(ପ୍ରଶାନ୍ତ ଭିତରକୁ ଯାଏ)

ବଟ : ଜ୍ୟୋାଇଁ ବାବୁ ଆସିଗଲେ ନା ?

ପ୍ରଫୁଲ : ସୌରଭ, ନା'ଚ ସେ କେତେବେଳେ ଆସିଲା ?

ବଟ : ମୁଁ ଟାକ୍ସି ଡାକିଗଲା ବେଳକୁ ଲାଷ୍ଟ ବସଟା ଷ୍ଟାଣ୍ଡରେ ଠିଆହେଇଥିଲା । ଭାବିଲି ସେ କାଳେ ଫେରିଥିବେ ।

ପ୍ରଫୁଲ : ନା' ସେ ଫେରିନି । ତୁ ଚାଲ ଲୋଡ କର ।

(ପ୍ରଫୁଲ ବଟ ବାହାରକୁ ଯାଆନ୍ତି । ପ୍ରଶାନ୍ତ ଡାନିକୁ ଶୋଇବା ଅବସ୍ଥାରେ କାନ୍ଧରେ ଧରି ପ୍ରଶାନ୍ତ ବି ବାହାରକୁ ଯାଏ । ପରେ ପରେ କାର ଛାଡିବାର ଶବଦ୍ ଶୁଣାଯାଏ । ମଂଚ ଅନ୍ଧାର ହୁଏ । ସେଇ ଅନ୍ଧାର ଭିତରୁ ପ୍ରବେଶଙ୍କ କଣ୍ଠରେ ତଳ ଘୋଷଣାଟି ଶୁଣାଯାଏ ।

ପ୍ରବେଶକ : ପ୍ରଶାନ୍ତ ଓ ପ୍ରଫୁଲ ଷ୍ଟେସନ ଚାଲିଗଲେ । କିନ୍ତୁ ଟ୍ରେନ ଆସିବା ପୂର୍ବରୁ ଖବର ପହଞ୍ଚିଲା -ତାଙ୍କ ବାପା ମାଧବବାବୁ ଆଉ ଇହଜଗତରେ ନାହାଁନ୍ତି । ପୁଣି ସେମାନେ ଫେରି ଆସିଲେ ।



# ଭାଗ-୧୫

(ସମୟ ରାତ୍ର- ସେଇ ଡ୍ରଇଁ ରୁମ । ଚିନ୍ତିତ ଅବସ୍ଥାରେ ପଦଚାରଣ କରୁଛନ୍ତି ଅମର ବାବୁ । ବାହାରୁ ଡାନିକୁ ଶୋଇବା ଅବସ୍ଥାରେ କାନ୍ଧରେ ପକାଇ ବଟ ବାହାରୁ ଆସି ଘର ଭିତରକୁ ଚାଲିଯାଏ । ପରେ ପରେ ଆସନ୍ତି ପ୍ରଫୁଲ୍ଲ ଓ ପ୍ରଶାନ୍ତ ।)

ପ୍ରଫୁଲ୍ଲ : ଏ ସବୁ କ'ଣ ହେଇଗଲା ମଉସା । ବାପାଙ୍କର ହଠାତ ଏମିତି...(ସକେଇ ଉଠନ୍ତି)

ପ୍ରଶାନ୍ତ : ମୁଁ ବିଶ୍ୱାସ କରିପାରୁନି ଭାଇ। ବାପା ଆମକୁ ଏମିତ ଅନାଥ କରି ଚାଲିଯିବେ ।

ପ୍ରଫୁଲ୍ଲ : ନା' ବାପା ଆମ ଉପରେ ଅଭିମାନ କରି ଚାଲିଗଲେ ।

ପ୍ରଶାନ୍ତ : ହଁ ଭାଇ ସଂପତ୍ତି ଭାଗ କରିବାକୁ କହି ଆମେ ତାଙ୍କୁ ଯେଉଁ ଆଘାତ ଦେଲେ ସେଥିରେ ତାଙ୍କର ଟେନସନ୍ ବଡିଗଲା । ସହଜେ ସେ ହାର୍ଟ ପେସେଣ୍ଟ ।

ପ୍ରଫୁଲ୍ଲ : ଆମକୁ ଭଗବାନ କେବେ କ୍ଷମା ଦେବେନି ।

ପ୍ରଶାନ୍ତ : ଭଗବାନ ରକ୍ଷାକରିଛନ୍ତି କୁହ । ଟ୍ରେନ ଆସିବା ଆଗରୁ ମଉସା ଆମ୍ଭମାନଙ୍କୁ ଖବରଟା ଜଣାଇ ଦେଲେ ନଚେତ ଶେଷ ଅବସ୍ଥାରେ ବାପାଙ୍କୁ ଦେଖି ନଥାନ୍ତେ ।

| | | |
|---|---|---|
| ଅମର | : | ହଁ ଚାରି ଚାରିଟା ପୁଅ ଥାଉ ଥାଉ ମୁଖାଗ୍ନି ଦେବାକୁ କେହି ନଥାନ୍ତୁ। |
| ପ୍ରଫୁଲ | : | ଚାଲ ଉପରକୁ ଅନ୍ତତଃ ଶେଷଥର ପାଇଁ ତାଙ୍କୁ ଦର୍ଶନ କରିନେବା। |
| ଅମର | : | ଯାଅ, ବାହାରୁ ବାହାରୁ ଝରକା ବାଟ ଦେଇ ବାପାଙ୍କ ଶେଷ ଦର୍ଶନ କରିଦିଅ। |
| ପ୍ରଫୁଲ | : | ଝରକା ବାଟ ଦେଇ ମାନେ, |
| ଅମର | : | ମାଧବର ବଡ ରୁମକୁ ମୁଁ ବାହାରୁ ତାଲା ଦେଇ ଦେଇଛି। କାରଣ ମୋର ମନେ ହେଉଛି ତାର ନାଚ୍ୟୁରାଲ ଡେଥ୍ ହେଇନି, |
| ପ୍ରଶାନ୍ତ | : | ମାନେ- ଆପଣ କ'ଣ କହୁଛନ୍ତି ମଉସା ? |
| ଅମର | : | ଆତ୍ମହତ୍ୟା କି ହତ୍ୟା କହିପାରୁନି। ପୋଲିସ ଆସି ତଦନ୍ତ କଲେ ସବୁ ଜାଣିପାରିବା। |
| ପ୍ରଫୁଲ | : | ପୋଲିସକୁ ଆପଣ ଖବର ଦେଇ ଦେଲେଣି ? |
| ଆମର | : | ନା' ଏ ପର୍ଯ୍ୟନ୍ତ ଦେଇନି। ତୁମେ ମାନେ ଆସିଗଲଣି ଏଥର ଦେଇଦେବା। |
| ପ୍ରଶାନ୍ତ | : | ଆପଣ ଜାଣିଛନ୍ତି ବାପା ବହୁଦିନ ହେଲା ହୃଦରୋଗରେ ଚିକିତ୍ସାରେ ଅଛନ୍ତି। ତାଙ୍କର ଷ୍ଟ୍ରୋକ ହେଇ ପାରେ। ଆପଣ ଏତେ ସନ୍ଦେହ କରୁଛନ୍ତି କାହିଁକି ? |
| ଅମର | : | ସନ୍ଦେହ କରିବାର ବହୁତ କାରଣ ଅଛି। ସେ ରୁମକୁ ପଶିଗଲେ ତୁମେ ସବୁ ଜାଣିପାରିବ। କଡାୟକ ଆରେଷ୍ଟ ବା ହୃଦକ୍ରିୟା ବନ୍ଦ ହେଇ ମୃତ୍ୟୁ ହେଇଛି ବୋଲି ମୋତେ ଜଣାଯାଉନି। ମୋର ମନେହୁଏ ତାଙ୍କୁ ମାରି ଦିଆଯାଇଛି। |
| ପ୍ରଫୁଲ<br>ପ୍ରଶାନ୍ତ | : | ମାରି ଦିଆଯାଇଛି , ନା' |
| ପ୍ରଶାନ୍ତ | : | ସେମିତି କୁହନ୍ତୁନି ମଉସା। |
| ପ୍ରଫୁଲ | : | ତାଙ୍କୁ କିଏ କାହିଁକି ମାରିବାକୁ ଯିବ। ତଙ୍କର ସେମିତି କେହି ଶତ୍ରୁ ନାହାଁନ୍ତି। |

ଅମର : ତୁମେ ମାନେ ଷ୍ଟେସନ ଗଲାପରେ ତାଙ୍କ ଛଡା ଏ ଘରେ କେହିନଥିଲେ। ବଟ ବି ଚାଲିଯାଇଥିଲା। ଏଇ ଅବସ୍ଥାରେ କିଏ ତାଙ୍କୁ ରୁମରେ ପଶିଛି ତାଙ୍କ ସିନ୍ଧୁକ ଆଲମାରି ଇତ୍ୟାଦି ଖୋଲିଛି ଶେଷରେ ତାର ଗଳାଚିପି ହତ୍ୟାକରିଛି।

ପ୍ରଶାନ୍ତ : ଗଳାଚିପି ହତ୍ୟା କରିଛି- ମାନେ ଗଳାରେ ଦାଗ ଥିବ।

ଅମର : ମୋର ସନ୍ଦେହ ହେଉଛି ଏ ଘର ସହିତ ପରିଚିତ କେହି ଏ କାମ କରିଛି।

ପ୍ରଫୁଲ : କିଏ ହେଇପାରେ ବୋଲି ଆପଣ ସନ୍ଦେହ କରୁଛନ୍ତି।

ଅମର : ତୁମର ଭିଣୋଇ ସୌରଭ ରାତି ବସରୁ ଓହ୍ଲାଇବା କଥା ଗାଁର କିଛି ଲୋକ ଦେଖିଛନ୍ତି। କିନ୍ତୁ ସେ ବର୍ତ୍ତମାନ କାହିଁ ଦେଖାଯାଉନି।

ପ୍ରଶାନ୍ତ : ହେଇପାରେ, ତେବେ ସେ ଏଘରର ଜ୍ୱାଇଁ, ତାକୁ ଏମିତି ଦୋଷାରୋପ କରିବାଟା ଆମେ ଠିକ ଭାବୁନୁ।

ପ୍ରଫୁଲ : ହଁ ମଉସା, ଆମଘରର ସମ୍ମାନ, ବାପାଙ୍କ ସମ୍ମାନ ଦୃଷ୍ଟିରୁ ପୋଲିସକୁ ନଡାକି ଚୁପଚାପ ଶବଦାହ କରିଦେବାଟା ଭଲ।

ଅମର : ହଁ ସେ ବି ଗୋଟେ କଥା। ତୁମେ ଯଦି ଚାହୁଁନ ମୋର କିଛି କରିବାର ନାହିଁ। ମୁଁ ଯାଉଛି ଗାଁର ଲୋକଙ୍କୁ ଡାକି ଆଣେ ସମସ୍ତେ ମିଶି ଶବଦାହ କରିବା...। ଏଇ ଚାବି ନିଅ। ବଟ କୁଆଡେ ଗଲା - ବଟ

ବଟ : (ଆସିଛି) କ'ଣ ଆଜ୍ଞା।

ଅମର : ତୁ ଆସିଲୁ ମୋ ସାଙ୍ଗେ। ମୁଁ ଯାହା ଯାହାଙ୍କୁ କହିବି ତାଙ୍କୁ ଡାକି ଆଣିବୁ।

(ଅମର, ବଟ ଗାଁ ଭିତରକୁ ଏବଂ ପ୍ରଶାନ୍ତ, ପ୍ରଫୁଲ ଉପରକୁ ଚାଲିଯାଆନ୍ତି)



# ଭାଗ - ୧୬

( ସେଇ ବେଡ ରୁମ । ମାଧବ ବାବୁଙ୍କ ଉପରେ ଗୋଟେ ଧଳା ଚଦର ଘୋଡେଇ ଦିଆଯାଇଛି । ପ୍ରଫୁଲ୍ଲ ଓ ପ୍ରଶାନ୍ତ ଆସନ୍ତି । ବାପାଙ୍କ ମୁହଁ ଉପରୁ ଚଦର ଖୋଲି ଦେଇ କାନ୍ଦ କାନ୍ଦ ହୋଇ କହନ୍ତି)

ପ୍ରଫୁଲ୍ଲ : ଦେଖୁଛୁ ପ୍ରଶାନ୍ତ ବାପାଙ୍କ ମୁହଁକୁ ଦେଖୁଛୁ । ତାଙ୍କର ମୃତ୍ୟୁ ହେଇଛି ବୋଲି ମନେ ହେଉଛି ?

ପ୍ରଶାନ୍ତ : ସେ ପୂଣ୍ୟବାନ ଲୋକ ଭାଇ । ଜୀବନ ସାରା ଦାନ କରିଛନ୍ତି ସିନା କାହାପାଖରେ ହାତ ପାତି ନାହାଁନ୍ତି । ଦେଖ ତାଙ୍କ ମୁହଁରୁ କେମିତି ଜ୍ୟୋତି ବାହାରୁଛି ।

ପ୍ରଫୁଲ୍ଲ : (ପୁଣି ଚଦର ଢାଙ୍କି ଦେଇ) ଆମକୁ ଏମିତି ଛାଡିଦେଇ ଚାଲିଗଲ ବାପା । ଆମେ ଚଣ୍ଡାଳ ଗୁଡାକ କି ପାପ କରିଥିଲୁ ଯେ ଶେଷବେଳକୁ ମୁହଁରେ ଟିକିଏ ନିର୍ମାଲ୍ୟ ଜଳ ଦେବାକୁ ସୁଯୋଗ ଦେଲନି ।

ପ୍ରଶାନ୍ତ : ଆମେ ପାପିଭାଇ ନହେଲେ ଶେଷ ମୁହୁର୍ତ୍ତରେ ଆମେ କାହିଁକି ଚାଲିଯାଉଥିଲେ ।(ହଠାତ ଚାପା ଗଳାରେ ପ୍ରଫୁଲ୍ଲ କୁହେ) ଗୋଟେ ରୁମାଲ ନେଇ ଏଇ ଗ୍ଲାସ, ତାଲା ଇତ୍ୟାଦିରୁ ଫିଙ୍ଗର ପ୍ରିଣ୍ଟ ସଫା କରିଦିଅ ।(ପୁଣି କାନ୍ଦ କାନ୍ଦ ସ୍ୱରରେ) ବାପା, ବାପା ।

ପ୍ରଫୁଲ୍ଲ : ହଁ ତୁ ଯାଇ ବାହାରଟା ଦେଖୁଥା ।

(ପ୍ରଫୁଲ୍ଲ ରୁମାଲ ନେଇ ସଫାକରି ଚାଲେ । ପ୍ରଶାନ୍ତ ସେମିତି ସଜେଇବା ଅବସ୍ଥାରେ ବାହାରକୁ

ଦେଖୁଥାଏ ।ହଠାତ ଅମର ବାବୁ ଦରଜା ପାଖରେ ଆବିର୍ଭାବ ହୁଅନ୍ତି ।)

ଅମର : ବାଃ, ଦି ଜଣଯାକ ମିଶି ଭଲକାମ କରୁଛ । stop it ।

ପ୍ରଶାନ୍ତ : ତୁମେ କିଛି ଶୁଣନି ଭାଇ। ସୌରଭ ଆମ ଘରର ଜ୍ୱାଇଁ ତା' ସମ୍ମାନ ରକ୍ଷାକରିବା ଆମର କର୍ତ୍ତବ୍ୟ ।

ଅମର : ବନ୍ଦ କର କହୁଛି ।

ପ୍ରଫୁଲ : ମଉସା ଆପଣ ଉପରେ ପଡି ଗାର୍ଡିଆନସିପ୍ ଦେଖାଇବା ଦରକାର ନାହିଁ। ଆମ ଘରର ସମ୍ମାନ ରକ୍ଷାକରିବା ପାଇଁ ଯାହା ଦରକାର ଆମେ ସେୟା କରୁଛୁ ।

ଅମର : ପୋଲିସକୁ ଖବର ଦେବାକୁ ମୋତେ ମନାକରିବାପରେ ଏସବୁର କ'ଣ ଦରାକର ଅଛି ।

ପ୍ରଶାନ୍ତ : ମୁଁ ପଚାରୁଛି ଆପଣଙ୍କର ଉଦ୍ଦେଶ୍ୟ କ'ଣ । ଆମେ ସୌରଭକୁ ଫାସି ଖୁଣ୍ଟିରେ ଝୁଲାଇ ଆମ ଭଉଣୀକୁ ବିଧବା କରିବୁ ।

ଅମର : ମୁଁ ଦେଖୁଛି ତୁମେ ମାନେ ଠିକ ବାଟକୁ ଆସିବନି ।

(ଅମର ହଠାତ ଭିତରକୁ ଚାଲିଯାଇ ଗୋଟିଏ ବନ୍ଧୁକ ନେଇ ଆସେ ।) Stop this farce I say. stop it ସେଇଠି ସେମିତି ଠିଆ ହୁଅ । move this side.

ପ୍ରଫୁଲ : ମଉସା, ପ୍ଲିଜ ଏ ନାଟକ ବନ୍ଦ କରନ୍ତୁ ।

ଅମର : ଚୋପ୍ , କହିଲା ମଉସା । ଚାଲ ସିଧା ପୋଲିସ ଷ୍ଟେସନକୁ ଚାଲ ।

ପ୍ରଶାନ୍ତ : କିନ୍ତୁ ଆମର ଦୋଷ କ'ଣ ?

ଅମର : ଦୋଷ କ'ଣ ମୋ ତୁଣ୍ଡରୁ ଶୁଣିବାକୁ ଚାହୁଁଛୁ ? ତୁମେ ଦି କଣ ରିତିମତ ଯୋଜନା କରି ତୁମ ବାପାଙ୍କୁ ମାରିଦେଇଛ ।

ପ୍ରଶାନ୍ତ : ନା' ଏସବୁ ମିଛ କଥା ।

ଅମର : ମିଛ ? ଠିକ୍ ସମୟରେ ପ୍ରଣବ ଆଉ ବର୍ଷା ଇତ୍ୟାଦିଙ୍କୁ ବାହାରକୁ ପଠେଇ ଦେବା ମିଛ ? ବଟକୁ ଚା' ପାଇଁ ଚିନି ଆଣିବାକୁ କହି

ମାଧବ ଧୁଧରେ ନିଦ ବଟିକା ମିଶାଇବା ମିଛ ? ନା' ବାପାଙ୍କ ମୁଣ୍ଡତଳୁ ଚାବି ନେଇ ଏଇ ସିନ୍ଧୁକରୁ ମାଲ ନେବା ମିଛ । ଯବାବ ଦିଅ । ସବୁ ଚୋରଙ୍କ ଭଳି ମୁହଁ ପୋତି ରହିଲ ଯେ, ତୁମେ ପାଠଶାଠ ପଢି ଶିକ୍ଷିତ ହେଇଛ ? ଧିକ୍ ତୁମର ଜୀବନ ଧିକ୍ ।

(କ୍ଷେତ୍ରବାସି ଆସି ଦରଜା ପାଖରେ ଠିଆ ହୁଅନ୍ତି ।)

ପ୍ରଫୁଲ : (କାନ୍ଦି ଉଠି) ବାପାଙ୍କୁ ଆମେ ମାରିଦେବାକୁ ଚାହିଁନ ଥିଲୁ ମଉସା ।

ପ୍ରଶାନ୍ତ : ଆମେ ଖାଲି ସିନ୍ଧୁକ ଭିତରେ କ'ଣ ରହିଛି ଦେଖିବାକୁ ଚାହିଁଥିଲୁ । ହେଲେ କିଛି ମିଳିଲାନି ।

(ହଠାତ ଦୁଇଜଣ ଯାଇ ଅମରଙ୍କ ଗୋଡ ଧରିନିଅନ୍ତି)

ପ୍ରଫୁଲ : ଆମକୁ ବଞ୍ଚାଅ ମଉସା ।

ପ୍ରଶାନ୍ତ : ନହେଲେ ଆମ ଚାରି ପାଞ୍ଜିରୁ ଚାଲିଯିବୁ । ମଉସା ।

ଅମର : ମୋ ଗୋଡ ଛାଡ କହୁଛି । ଛାଡିଦିଅ ।

କ୍ଷେତ୍ର : ପିଲା ଦି'ଟାକୁ ଦୟାକର ଅମର । ନହେଲେ ଏଘରର ମାନ ଇଜ୍ଜତ ସବୁ ମାଟିରେ ମିଶିଯିବ ।

ଅମର : ତୁମେ ବି ଆସି ପହଞ୍ଚି ଯାଇଛ ଶକୁନି ଶଶୁର । ତୁମେ ବି ପୋଲିସ ଷ୍ଟେସନ ଚାଲ ।

କ୍ଷେତ୍ର : what ? ମୋତେ ପୋଲିସ ଷ୍ଟେସନ ନେବ ।

ଅମର : yes ନାଟର ଗୋବର୍ଦ୍ଧନ କୁ ସାଂଗରେ ନନେଲେ ଆଉ ବାଟ ଅଛି । ଏପଟକୁ ଆସ, ହୁଁ ଚାଲ ସେଇଠି ପୋଲିସ ଷ୍ଟେସନରେ ସବୁ କହିବି । ତୁମ ଫ୍ରେଣ୍ଡ, ପିଲୋସଫଲ ଆଉ ଗାଇଡ ମଦୁଆ ହଟକୁ ଗୋକୁଳିର ସାଙ୍ଗମାନେ ବାନ୍ଧି ରଖିଛନ୍ତି । କୋଉଠୁ ନିଦ ବଟିକା ଅଣାଯାଇଛି ସେ ସବୁ ପୋଲିସ ଆଗରେ କହିବ । ଆରେ ହତଚେକି ଏପଟକୁ ଆସ- I move .

(କ୍ଷେତ୍ରମୋହନ ଡରି ପ୍ରଫୁଲ ଓ ପ୍ରଶାନ୍ତଙ୍କ ସହିତ ମିଶି ହାତଚେକି ଠିଆ ହୁଅନ୍ତି)

ଅମର : ଚାଲ ଗାଁ ଦାଣ୍ଡକୁ ଚାଲ । ସେଠି ଗାଁ ସାରା ଲୋକ ଠିଆହୋଇଛନ୍ତି । ତାଙ୍କରି ସାମନାରେ ହତକୁ ଟେକି ଥାନା ପର୍ଯ୍ୟନ୍ତ ମାର୍ଚ୍ଚ କରାଇ କରାଇ ନେବି ଚାଲ.....ଗୁହ । ମାମୁଁ ଘରକୁ ଗଲେ ଫେରିବାର ଯେତେବେଳେ ବଟ ନାହିଁ ବାପାର ଆଶିର୍ବାଦ ପଦଧୂଳୀ ନେଇଯାଅ । ସର୍ଗରେ ଥାଇ ସେ କ୍ଷମାକଲେ କିଛିଟା ଦଣ୍ଡ ଲାଘବ ହେଇପାରେ ।

(ପ୍ରଫୁଲ, ପ୍ରଶାନ୍ତ ଯାଇ ବାପାଙ୍କ ଗୋଡ ପାଖରେ ମୁଣ୍ଡ ବାଡାଇ କାନ୍ଦିବାକୁ ଲାଗନ୍ତି । ମାଧବ ମଧ୍ୟ ସେଇ ଶୋଇବା ଅବସ୍ଥାରେ ସକେଇ ଉଠନ୍ତି । ପ୍ରଫୁଲ, ପ୍ରଶାନ୍ତ ଆବାକ ହେଇ ଚାହାଁନ୍ତି । ସୌରଭ ଆଖ ଗୋକୁଳି ଆସନ୍ତି)

ପ୍ରଫୁଲ
ପ୍ରଶାନ୍ତ : ବାପା ଆପଣ....?

ମାଧବ : ହଁ ତୁମର ହତ ଭାଗା ବାପା ମରିନି ।

ପ୍ରଫୁଲ
ପ୍ରଶାନ୍ତ : ବାପା

ମାଧବ : ତୁମ ମାନଙ୍କର ଖଳବୁଦ୍ଧି ସୌରଭ ଆଖିରେ ଠିକ ସମୟରେ ଧରା ପଡି ଯାଇଥିବାରୁ ମୁଁ ବଞ୍ଚି ଯାଇଛି ।

ଅମର : ତୁ ହଠାତ କାହିଁକି ଉଠି ପଡିଲୁ ମାଧବ । ଗାଁ ଦାଣ୍ଡରେ ମାର୍ଚ୍ଚ କରାଇଥିଲେ ସମସ୍ତେ ଏମାନଙ୍କ ସ୍ୱରୂପ ଦେଖିଥାନ୍ତେ । ଏମାନଙ୍କର ଦୋଷର ଦଣ୍ଡ ମିଳିଥାନ୍ତ ।

ମାଧବ : ମୋ ଦୋଷପାଇଁ ଏମାନେ ଦଣ୍ଡ ପାଇବେ କାହିଁକି ଅମର । ପ୍ରକୃତରେ ମୁଁ ହିଁ ଦୋଷି । ମୋ ପାଇଁ ଭଗବାନ ଏ ଦଣ୍ଡ ବିଧାନ କରିଛନ୍ତି ।

ଅମର : ତୁ ଏସବୁ କ'ଣ କହୁଛୁ ମାଧବ ।

ମାଧବ : ହଁ ଅମର । ଯୋଉ କାଥାଟା ସାରା ଜୀବନ ଗୁରତ୍ୱଦେଇ ବଝିନଥିଲି ଏଇ ରାତି ଭିତରେ ସେ ସବୁ ମୋ ସାମାନାରେ ମୁଁ ଖଲାପ କରିଛି । ସେଇଥି ପାଇଁ ସେମାନେ ମୋତେ ଏପ୍ରକାର ବ୍ୟବହାର ଦେଖାଇଛନ୍ତି ।

| | | |
|---|---|---|
| ଅମର | : | ତୁ ତୋ କର୍ତ୍ତବ୍ୟରେ ଖିଲାପ କରିନୁ । ପୁଅ ମାନଙ୍କ ପାଇଁ ତୁ ଆଉ କ'ଣ କରିଥାନ୍ତା । |
| ମାଧବ | : | ହଁ ମୁଁ ଏମାନଙ୍କୁ ଉଚ୍ଚ ଶିକ୍ଷିତ କରେଇଛି । ସମାଜରେ ପ୍ରତିଷ୍ଠିତ କରାଇବା ପାଇଁ କହାକୁ ଚାକିରୀରେ ପୂରାଇଛି ତ କାହା ବ୍ୟବସାୟ ବଢାଇବା ପାଇଁ ମୁଠା ମୁଠା ଟଙ୍କା ଧରାଇ ଦେଇଛି । ସେମାନଙ୍କୁ ଗୋଟେ ଗୋଟେ ଟଙ୍କା କମାଇବା ମେସିନ କରିଦେବାରେ ସାହାଯ୍ୟ କରିଛି । ଭାବିଛି ଏତିକି କରିଦେଲେ ଜଣେ ବାପାର କର୍ତ୍ତବ୍ୟ ଶେଷ ହେଇଗଲା । କିନ୍ତୁ ଏବେ ବୁଝିନ୍ତୁ ମୁଁ ଆଉ ଗୋଟେ ଭୂଲ କରିଛି ବସିଛି। ମୋ ଗାଁଉଲି ଅଳ୍ପ ପାଠୁଆ ବାପା ମୋତେ ଯେଉଁ ସଂସ୍କାର ଦେଇଥିଲା । ସେଇଟା ଏଇମାନଙ୍କୁ ଦେବାକୁ ମୁଁ ଭୁଲି ଯାଇଛି । |
| ଅମର | : | ମାନେ ? |
| ମାଧବ | : | ବାପା ମୋତେ ଅନେକ ସମୟରେ କହୁଥିଲେ ଯେତେ ବଡ ଲୋକ ହୁଅନା କାହିଁକି, ଯେତେ ଯୁଆଡେ ନାଁ କରନା କହିଁକି କେତେବେଳେ ନିଜର ଜନ୍ମମାଟି ନିଜର ଭାଷା ସଂସ୍କୃତିକୁ ହତାଦର କରିବନି । କାରଣ ସେ ହେଉଛି ତୁମର ସବୁକିଛି । ତାକୁ ଭୁଲିଗଲେ ତୁମେ ତୁମର ପରିଚୟ ହରାଇବସେଇବ । ଏଇ ମରମ କଥାଟାକୁ ଜୀବନ ସରା ମୁଁ ପାଳନ କରିନି ଏ କଥାଟା ମୋ ପିଲାମାନଙ୍କୁ ମଧ୍ୟ ଶିଖେଇବାକୁ ଉଚିତ ମନେ କଲିନି । ମୁଁ ମୋ ବାପାଙ୍କ କଥାକୁ ସମ୍ମାନ ଦେଇନି- ତେଣୁ ଗାଁରେ ଯେତେବେଳେ ମୁଁ କିଛି ଖର୍ଚ୍ଚ କରି ରଖିଥିଲି । ଏମାନେ ମୋ ଇଚ୍ଛାକୁ ସମ୍ମାନ ଦେଲେନି ।, |
| ପ୍ରଫୁଲ | : | ନା' ବାପା ଆପଣ ସେମତି ନିଜକୁ ଦୋଷି ବୋଲି କୁହନ୍ତୁ ନି ଆମେ ନିଜର ସ୍ୱର୍ଥ ଲାଳସା ପାଇଁ ଆପଣଙ୍କୁ ଏ ପ୍ରକାର ବ୍ୟବହାର କରିନ୍ତୁ । |
| ପ୍ରଶାନ୍ତ | : | ଆମେ ବହୁତ ଭୁଲ କରିନ୍ତୁ । ଆମକୁ କ୍ଷାମା କରି ଦିଅନ୍ତୁ । |

(ପ୍ରଫୁଲ, ପ୍ରଶାନ୍ତ ବାପାଙ୍କ ଗୋଡଧରିବାକୁ ଯାଆନ୍ତି । ମାଧବ ଭୋ ଭୋ ହୋଇ କାନ୍ଦି ଉଠନ୍ତି । ବଟ ଡାଳିକୁ ନେଇ ଆସିଯାଇଥାଏ ।)

ଜାନି : (ମାଧବଙ୍କ ପାଖକୁ ଆସି) ମୋ ପ୍ରମିସ୍ ମୁଁ ଫେରାଇ ନେଉଛି ଗ୍ରାଣ୍ଡପା । ତୁମେ ମରିବା ଦରକାର ନାହିଁ । କଥା ଦିଅ-ତୁମ ପ୍ରମିସ ରଖିବନି ।

ମାଧବ : (ଜାନିକୁ କୋଳକୁ ନେଇ) ଠିକ୍ ଅଛି ମୋ ପ୍ରମିସ ମୁଁ ଫେରେଇ ନେଲି । ତୁ କିନ୍ତୁ ମୋତେ Grand pa ନଡାକି ଜେଜେ ଜେଜେ ବୋଲି ଡାକିବୁ ।

ଜାନି : ହଁ ଜେଜେ ଡାକିବି । ପ୍ରମିସମ ... । ଜେଜେ.... ।

(ମାଧବ ଡାନିକୁ ଟେକି ଧରନ୍ତି । ତାଙ୍କ ଆଖିରୁ ଆନନ୍ଦ ଅଶ୍ରୁ ଗଡି ଚାଲେ । ପାଖ ଘରୁ ଅନ୍ଧ ଓସ୍ତାଦ୍ କଣ୍ଠରୁ ଶୁଣାଯାଏ । ଗଙ୍ଗାଧରଙ୍କ ସେ ପଦଟି)

ମାତୃଭାଷା ମାତୃଭୂମିର ମମତା ଯା' ହୃଦେ ଜନମି ନାହିଁ ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ । ଅନ୍ତରାଳରୁ ଏଇ ପଦଟି କୋରସ ଭାବରେ ଆବୃତ୍ତି ହେଉଥାଏ ମଂଚର ଆଲୋକ କମି କମି ଆସେ ।



# * ନିଶ

ହେ ନିଶ! ତୁମେ ମୋର ଅତି ପ୍ରିୟତମ
କେତେଯେ ପ୍ରତୀକ୍ଷାପରେ
ହେଲା ତୁମ ଅଙ୍କୁର ଉଦ୍‌ଗମ,
ଧୂଷର ପାଣ୍ଡୁର ରଂଗେ ଥିଲ କେତେ ମନୋରମ
ହେଲ ପୁଣି ତାମ୍ର ବର୍ଣ୍ଣୀ
ବଡାଇଲ ମୁଖର ସୁଗମ,
ଏବେ କିନ୍ତୁ କଳା ମିଚିମିଚି ମଖମଲି,
ନରମ ଲହୁଣୀ ଆହା, କେତେ ମୁଲାୟମ!
ହେ ନିଶ! ତୁମେ ମୋର ଅତି ପ୍ରିୟତମ (୧)

ହେ ନିଶ! ତୁମ କ୍ଷେତ ବଡ ସୁରକ୍ଷିତ
ବୀଜ ତୁମ ହାଇବ୍ରିଡ-ଅଧିକ ଅମଳକ୍ଷମ, ବହୁତ ଉନ୍ନତ,
କେ ବିଜ୍ଞାନୀ ଆହା ସତେ କରିଛି ଉତ୍ପନ୍ନ
ଥରେ ମାତ୍ର ହୋଇଅଛି ବୁଣା
ନାହିଁ ତାର ରୋଗ ଭୟ କୀଟ ଆକ୍ରମଣ
ବାରମ୍ବାର କର୍ତ୍ତନ କଲେବି
ଅକ୍ଳେଶରେ ହେଉଛ ପ୍ରକଟ, ଆଉ ସଗର୍ବେ ବର୍ଦ୍ଧିତ
ହେ ନିଶ! ତୁମ ବୀଜ ବହୁତ ଉନ୍ନତ। (୨)

ହେ ନିଶ ତୁମ କ୍ଷେତ ବଡ ସୁରକ୍ଷିତ
ତୁମ ଜଳସେଚନକୁ ନାକତଳେ ଖଞ୍ଜା ଦୁଇଟି ଝରଣା,
ତଳେ ପୁଣି ଆର୍ଦ୍ରମୁଖ, ଭରା ଜଳକଣା,
ଧୋଇ ବା ମରୁଡି ନାହିଁ, ଚିର ଉର୍ବର ଭୂଇଁ
ସେଥେ ସଯତ୍ନେ ପ୍ରସ୍ତୁତ,
ନିଶ! ତୁମ କ୍ଷେତ ବଡ ସୁରକ୍ଷିତ। (୩)

ହେ ନିଶ! ତୁମେ ମୋର ଅତି ପ୍ରିୟସାଂଗ
ମୋ ପାଇଁ ପରିଚିତ ନୁହେଁ ତୁମେ,

ତୁମ ପାଇଁ ଲୋକ ଜାଣନ୍ତି ମୋ ନାମ,
ସ୍କୀଠୁ ବଳି ତୁମେ ମୋର ଅତି ଅନ୍ତରଙ୍ଗ
ସ୍କୀ ଆସିବା ଆଗରୁ ଯୁବା ବୟସର ସାଥି ମୋ ପ୍ରଥମ।
ହେ ନିଶ! ତୁମେ ମୋର ସଖା ପ୍ରିୟତମ।(୪)

ହେ ନିଶ! ଯେବେ ଯିବି ଶ୍ମଶାନର ଦ୍ୱାର
ମୋ ସାଙ୍ଗରେ ନଯିବେ କେହି
ପୁତ୍ର କନ୍ୟା ପତ୍ନୀ ସହୋଦର,
ଏକା ତୁମେ ସାଥେ ଥିବ ମୋର
ମୋ ସାଥେ ମୋ ଜୁଇରେ ଜଳୁଥିବ
ତୁମେ ମୋର ଇହକାଳ ପରକାଳ
ଚିର ସହଚର।
ହେ ନିଶ! ତୁମେ ମୋର ଅତି ଆପଣାର
ଅତି ଆପଣାର। (୫)

❖❖❖

## * ସନ୍ ଡ୍ୟାଡି ଡୁଏଟ

ଡ୍ୟାଡି! ପାରୁ ନାହିଁ ବୁଝିବୋଲି କାଲିଠାରୁ ଭାବୁଛି,
ପଚାରିବି ପଚାରିବି ଭାବି ରହିଯାଉଛି;
କାଳେ ତୁମେ ଦେବ ଗାଳି ଠକିଦେବ ପିଲା ବୋଲି
ସେଥିପାଇଁ ମନ କଥା ମନେ ମାରି ବସୁଛି। ।।୧।।

ସନ୍! କିବା କଥା ପାଇଁ ଦୁଃଖ କରୁଛୁ ମୋ ଧନରେ
ଖୋଲିସବୁ କହିଦେ ଅଛି ଯା ମନରେ,
ହଜିଥିଲେ ଖୋଜିଦେବି ଭାଂଗିଥିଲେ ଗଢିଦେବି
ତୁ ମୋ ଜୀବନ ସରା ମୋ ତିୟର ସନ୍‌ରେ। ।।୨।।

ଡ୍ୟାଡି ! କହିବକି ମୋତେ ଆଜି ସେ ଗୁପତ କଥାଟି
କେଜେ ବାପା ସତେ କଣ ତୁମ ନିଜ ବାପାଟି,

ଲୁଚାଇବ ଯଦି କିଛି ବିଷ ଖାଇବି କହୁଛି
ଦେହଙ୍କୁଇଁ କହିଦିଅ ଭିତିରିଆ ସତଟି।          ।।୩।।

ସନ୍ ! ଏକି କଥା ପଚାରୁଛୁ ଆଜି ମୋ ଧନରେ
ସନ୍ଦେହର ବିଷ କିଏ ଭରିଲା ତୋ ମନରେ,
ତୋ ଜେଜେ ମୋ ବାପା କାହାକୁ ନାହିଁ ଅଛପା,
ଅସଲସେ ଗୋଟାପଣେ ଖାଦ ନାହିଁ ଜମାରେ।     ।।୪।।

ଡ୍ୟାଡି ! ତୁମେ ତ ବାପା ବୋଲି ଡାକ ମୋ ଜେଜେଙ୍କୁ
ମୁଁ କାହିଁକି ଡ୍ୟାଡି ବୋଲି ଡାକୁଅଛି ତୁମକୁ?
ତୁମେ ଯଦି ତାଙ୍କ ପୁଅ ମୁଁ କି ତୁମ ପୁଅ ନୁହଁ
ଏକାଘରେ ରହି କିମ୍ପା ଅଲଗା ମୋ ବେଳକୁ?     ।।୫।।

ସନ୍! ଜେଜେ କ ପିନ୍ଧନ୍ତି ନିତି ଧୋତି ଆଉ କୁରୁତା
ମୁଁ ପିନ୍ଧେ କୋର୍ଟ ଟାଇ ପ୍ୟାଣ୍ଟ ସାର୍ଟ ଯୋତା
ଯାହାକୁ ଯେମିତି ସାଜେ ଶିଖାଇଛି ତୋତେ ମୁଁ ଯେ,
ସେଥିପାଇଁ ଡ୍ୟାଡି ମୁଁ ତୋ ଜେଜେ ମୋ ବାପା।     ।।୬।।

ଡ୍ୟାଡି ! ଜେଜେମା ପରି ମୋ ମମି ପିନ୍ଧୁଛି ଶାଢୀ
କପାଳେ ନାଇ ସିନ୍ଦୂର ଓଢଣା ଦେଉଛି ଟାଣି
ଡାକିବାକୁ ତାକୁ ମମି ଲାଜଲାଗେ ମୋତେ ଭାରି
ତୁମ ସଂଗେ ମୋ ମମିଟା ମୋଟେ ସୁଟ କରୁନି।
ମୋ ସାନକଥା ମାନି ଆଣ ଗୋଟେ ସାହେବାଣୀ
ପିନ୍ଧିପାରୁଥିବ ଯିଏ ପ୍ୟାଣ୍ଟ କୋର୍ଟ ଓ ବିକିନି
ତାଙ୍କୁ ମୁଁ ଡାକିବି ମମି ଏ ପୁରୁଣାଟା ଦେବା ତଡି
ଦୁନିଆଁ ଜାଣିବ (ତେବେ ଆମେ) ପକ୍କା ସନ୍ ଡ୍ୟାଡି ମମି। ।।୭।।



# ସିଦ୍ଧାନ୍ତ

କଳାପରିଷଦ, ଢେଙ୍କାନାଳ ଦ୍ୱାର ବିଭିନ୍ନ ସ୍ଥାନରେ ଏ ନାଟକ ମଞ୍ଚସ୍ଥ ହେବା ସମୟରେ ଭାଗନେଇଥିବା ଶିଳ୍ପୀମାନେ ।

| ଚରିତ୍ର ଲିପି | | ଶିଳ୍ପୀଙ୍କ ନାମ |
|---|---|---|
| ମାଧବ | : | ସୁରେଶ ମିଶ୍ର |
| ଅମର | : | ଅନାଥ ବନ୍ଧୁ ସାହୁ |
| ପ୍ରଫୁଲ୍ଲ | : | ଚନ୍ଦ୍ରକାନ୍ତ ମିଶ୍ର |
| ପ୍ରଶାନ୍ତ | : | କିଶୋର ରାଉତ |
| ପ୍ରଣବ | : | ଗୌରକାନ୍ତ ପଟ୍ଟନାୟକ |
| କ୍ଷେତ୍ରମୋହନ | : | ଶଶିକାନ୍ତ ପାଣି |
| ସୌରଭ | : | ଶତ୍ରୁଘ୍ନ ମାଟି |
| ଘରମାଲିକ | : | ଇନ୍ଦ୍ରମଣି ବେହେରା |
| ବଟ | : | ଶ୍ରୀକାନ୍ତ ମିଶ୍ର |
| ପ୍ରବେଶକ | : | ବୈଦ୍ଧଶଙ୍କର ସ୍ୱାଇଁ |
| ଅନ୍ଧ ଭିକାରୀ | : | ବିଷ୍ଣୁ ଚରଣ ମହାରଣା |
| ଗ୍ରାମବାସୀ | : | ବିଚ୍ଛନ୍ଦ ମହାପାତ୍ର |
| ବର୍ଷା | : | ମନଶ୍ରୀ ମଧୁସ୍ମିତା |
| ରାଜଶ୍ରୀ | : | ପ୍ରୀତିଶ୍ରୀ ପ୍ରିୟମ୍ବଦା |
| ବର୍ଷାର ସାଙ୍ଗ | : | ମନ୍ଦାକିନୀ, ପ୍ରଜ୍ଞା, ପଲ୍ଲବୀ |



| | | |
|---|---|---|
| ସଂଗୀତ | : | ଅମର ପଟ୍ଟନାୟକ/ପ୍ରଭାତ ମହାନ୍ତି |
| କଣ୍ଠ | : | ଅମର/ନିରେସା ପଟ୍ଟନାୟକ |
| ମଞ୍ଚ | : | ଘନଶ୍ୟାମ ମହାରଣା |
| ନିର୍ଦ୍ଦେଶନା | : | ଶତ୍ରୁଘ୍ନ ମାଟି |
| ଦିଗ୍‌ଦର୍ଶନ | : | ଦିଲ୍ଲୀଶ୍ୱର ମହାରଣା |

# ଉତ୍ତର ପୁରୁଷ

ରାଜ୍ୟସ୍ତରୀୟ ଓ ଜାତୀୟସ୍ତରୀୟ ପ୍ରତିଯୋଗିତାରେ
ଶ୍ରେଷ୍ଠ ପ୍ରଯୋଜନା,
ଶ୍ରେଷ୍ଠ ନାଟ୍ୟ ରଚନା, ଶ୍ରେଷ୍ଠ ନିର୍ଦ୍ଦେଶନା, ଶ୍ରେଷ୍ଠ ସଂଗୀତ ନିର୍ଦ୍ଦେଶନା
ଓ ଶ୍ରେଷ୍ଠ ଅଭିନୟ ପାଇଁ ବହୁ ପୁରସ୍କାରପ୍ରାପ୍ତ ।

# ଉତ୍ତର ପୁରୁଷ

## ଚରିତ୍ର ଲିପି

ବିଭୂ ପ୍ରସାଦ, ଦଣ୍ଡପାଣି,
ସୁରେଶ, ଅବନୀ, ବୁଡା, ମଣ୍ଟୁ, ବାବି,
ବୀର, କହ୍ନେଇ, ସୂତ୍ରଧର- ୧, ସୂତ୍ରଧର- ୨,
ମୁନା, ଦୀପ୍ତି

# ଉତ୍ତର ପୁରୁଷ

(ସମଦାୟ ମଞ୍ଚକୁ କେତେ ଗୁଡ଼ିଏ ଅଭିନୟାଞ୍ଚଳରେ ଭାଗକରାଯାଇଛି । ଅଭିନୟାଞ୍ଚଳ- ୧ରେ ଆଲୋକ ଆସିଛି । ନୃତ୍ୟ ଭଙ୍ଗୀରେ ପ୍ରବେଶ କରନ୍ତି ସୂତ୍ରଧର- ୧ ଓ ସୂତ୍ରଧର- ୨ ।)

ସୂତ୍ର (୧) : କଥାଟିଏ କହୁ କଥାଟିଏ ।
ସୂତ୍ର (୧) : କିସ କଥା ?
ସୂତ୍ର (୧) : ବେଙ୍ଗୁଲି କଥା ।
ସୂତ୍ର (୨) : କି ବେଙ୍ଗୁଲି ।
ସୂତ୍ର (୧) : କାଠ ବେଙ୍ଗୁଲି ।
ସୂତ୍ର (୨) : କି କାଠ ।
ସୂତ୍ର (୧) : ତେଲି ମାଠ ।
ସୂତ୍ର (୨) : କି ତେଲି ।
ସୂତ୍ର (୧) : ଘଣା ପେଲି ।
ସୂତ୍ର (୨) : କି ଘଣା ।
ସୂତ୍ର (୧) : ନାକ ଚଣା ।
ସୂତ୍ର (୨) : କି ନାକ ।
ସୂତ୍ର (୧) : ଶୁଆ ନାକ ।
ସୂତ୍ର (୨) : କି ଶୁଆ ।

ସୂତ୍ର (୧) : ରାଜାଙ୍କ ଶୁଆ
ସୂତ୍ର (୨) : କି ରାଜା ।
ସୂତ୍ର (୧) : ଖଣ୍ଡି ଖଜା ।
ସୂତ୍ର (୨) : କି ଖଣ୍ଡି ।
ସୂତ୍ର (୧) : ମିରିଗ ଲେଣ୍ଡି ।
ସୂତ୍ର (୨) : କି ମିରିଗ ।
ସୂତ୍ର (୧) : ଝାଡ଼ ମିରିଗ ।
ସୂତ୍ର (୨) : କି ଝାଡ଼ ।
ସୂତ୍ର (୧) : କଣ୍ଟା ବାଡ଼ ।
ସୂତ୍ର (୨) : କି କଣ୍ଟା ।
ସୂତ୍ର (୧) : କାନକୋଳି କଣ୍ଟା ।
ସୂତ୍ର (୧) : ଯହିଁ ଲାଗିଥିବ ଝଟାପଟା । (ଦୁହେଁ ହସି ଉଠିଲେ)
ସୂତ୍ର (୨) : ଆଜ୍ଞା ଆମେମାନେ ଏତେ ଯୋରରେ ହସିଲୁ ଅଥଚ ଆପଣମାନେ କେହି ହସିଲେନି ତ ?
ସୂତ୍ର (୧) : ଅସଲ କଥାହେଲା ଆପଣମାନେ ଆପଣଙ୍କ ଓଠର ହସଟିକକ ହରେଇ ବସିଛନ୍ତି । ସ୍ୱାଧୀନତାପରେ କ'ଣ ଆପଣ ଆଶା କରିଥିଲେ - କ'ଣ ସବୁ ପାଇଛନ୍ତି । ମହରଗରୁ ଆସି କାନ୍ତାରରେ ପଡ଼ି ଯାଇଛନ୍ତି ଆଜ୍ଞା ।
ସୂତ୍ର (୨) : ହଁ ଆଜ୍ଞା, ଫ୍ରମ୍ ଫ୍ରାଇଂ ପ୍ୟାନ୍ ଟୁ ଫାୟାର ।
ସୂତ୍ର (୧) : ଭାବୁଛନ୍ତି କ'ଣ ଚାଲିଛି ? କ'ଣ ଚାଲିଛି ଏ ଦେଶରେ ।
ସୂତ୍ର (୨) : କ'ଣ ଦେଖୁଛୁ । କ'ଣ ଦେଖୁଛୁ ଏ ଦେଶରେ ।
ସୂତ୍ର (୧) : ଧପ୍‌ପାବାକ୍ ।
ସୂତ୍ର (୨) : ଗୁଣ୍ଡାରାଜ ।
ସୂତ୍ର (୧) : ବାଟ ମାରଣା ।
ସୂତ୍ର (୨) : ପ୍ରତାରଣା ।
ସୂତ୍ର (୧) : ଡ଼କାୟତି ।
ସୂତ୍ର (୨) : ଦିନରାତି ।

ସୂତ୍ର (୧) : ପ୍ରତିବାଦ କରିବାକୁ କେହି ନାହିଁ।
ସୂତ୍ର (୨) : ପ୍ରତିରୋଧ କରିବାକୁ କାହାର ସାହାସ ନାହିଁ।
ସୂତ୍ର (୧) : ସାମାନ୍ୟ ସ୍ୱର ଉତ୍ତୋଳନ କରିବାକୁ କେହି ନାହିଁ।
ସୂତ୍ର (୨) : ଏଇଟା ଅନ୍ୟାୟ, ଏଇଟା ଭୁଲ ଏଇ ପଦଟିଏ କାହାରି ପାଟିରୁ ବାହାରୁନି। କିନ୍ତୁ କାହିଁକି, କାହିଁକି ଆପଣମାନେ ନିରବ।
ସୂତ୍ର (୧) : ହତବାକ୍।
ସୂତ୍ର (୨) : ହତଭମ୍ବ।
ସୂତ୍ର (୧) : ନିଷ୍ପନ୍ଦ।
ସୂତ୍ର (୨) : ନିର୍ବିକାର।
ସୂତ୍ର (୧) : ସବୁ ଦେଖୁଛନ୍ତି, ଶୁଣୁଛନ୍ତି।
ସୂତ୍ର (୨) : ସହୁଛନ୍ତି -ଭାବୁଛନ୍ତି।
ସୂତ୍ର (୧) : ଅଥଚ ଯନ୍ତ୍ରଣା ନାହିଁ। ରିଆକ୍ସନ ନାହିଁ।
ସୂତ୍ର (୨) : ଜଡ଼ପଥର ଭଳି ଖାଲି ବଞ୍ଚିରହି ସହିଯିବା।
ସୂତ୍ର (୧) : ପେଟରେ ଓଦାକନା ଦେଇ ଶୋଇଯିବା।
ସୂତ୍ର (୧) : ତାମାନେ ଆପଣମାନେ ସବୁ ମୂକ ପାଲଟି ଯାଇଛନ୍ତି।
(୨) : you have become domb
(୧ମ- ସୂତ୍ରଧର - ୨ୟକୁ ଏମିତି ଡଙ୍ଗରେ ମାଡ଼ ଦେଲାଯେ ସେ ବିକୃତ ଭଙ୍ଗିକରି ଠିଆହୋଇଗଲା ଦର୍ଶକମାନେ ହସି ଉଠିଲେ)
ସୂତ୍ର (୧) : ଯାହାହେଉ ଆପଣମାନେ ହସିଲେ। ଆରେ ହେ ତୋ ଅଭିନୟ ବନ୍ଦକର। ବାବୁମାନେ ହସିଲେଣି। ନମସ୍ତେ ବାବୁମାନେ।
ସୂତ୍ର (୨) : ସଲାମ ବାବୁମାନେ। ଆପଣ ଭାବୁଥିବେ ଆମେ ଦୁଇଜଣ କିଏ ?
ସୂତ୍ର (୧) : ସତରେ ଆମେ ଦୁଇଜଣ କିଏ ? ଆମେ ଦୁଇଜଣ ହେଉଛୁ ଆଜି ନାଟକର ସୂତ୍ରଧର।
ସୂତ୍ର (୨) : ନାଟକର ସମୟ କାଳ, ପାତ୍ର ପାତ୍ରୀମାନଙ୍କ ସହିତ ଆପଣମାନଙ୍କୁ ପରିଚିତ କରାଇ ଦେବାକୁ ଆମର ଉପସ୍ଥିତି। ତା'ହେଲେ ଆମ କାମଟି ଆମେ ଆରମ୍ଭ କରୁଛୁ।
(ଜଣେ ବାଦ୍ୟଯନ୍ତ୍ର ବଡାଇବାର ଅଭିନୟକରେ।)

ସୂତ୍ର (୧) : (ଗୀତ) ବାଟ ଛାଡ଼ ସଭାକନେ ଯାଉଛି ହାଡ଼ି।
ହାଡ଼ିଟୋକା ମଦ ଖାଇ ଯାଉଛି ଗଡ଼ି। ......ବାଟଛାଡ଼......

ସୂତ୍ର (୨) : ଆରେ ରହ। ଏଇଠି କ'ଣ ଦଣ୍ଡନାଚ ଆରମ୍ଭ କରିଦେଲୁ।

ସୂତ୍ର (୧) : ସେପଟକୁ ଦେଖୁନ ଭାଇ କିଏ ଆସୁଛନ୍ତି।

ସୂତ୍ର (୨) : ଆରେ ସତେତ, ଆମର ବିଶିଷ୍ଟ ନେତା ବାବୁ ତାଙ୍କ ଚେଲା ଚାମୁଣ୍ଡାଙ୍କ ସହ ସଭାକୁ ବିଜେ କରୁଛନ୍ତି।

ସୂତ୍ର (୧) : ସେଇଥି ପାଇଁ ପରା ଏ ଗୀତ ପଦକ ବାହାରି ପଡ଼ିଲା।

ଗୀତ - ବାଟଛାଡ଼ ସଭାକନେ ଆସନ୍ତି ନେତା,
ନେତାଙ୍କର କାମ କମ - ବେଶୀତ କଥା
ଆଜି ଏଠି ହେବ ସଭା, ହୋଇଛନ୍ତି ତେଣୁ ଉଭା
ଶୁଣିବା ଚାଲ ସଂଗାତେ ନେତାଙ୍କ ବାର୍ତ୍ତା। ...

(ସୂତ୍ରଧର ଚାଲିଯାଆନ୍ତି। ନେତା ଅବନୀ ସୁନ୍ଦର, ବୁଡା ଓ ମଞ୍ଜୁ ପ୍ରବେଶ କରନ୍ତି। କରତାଳି ସହ ତାଙ୍କୁ ଫୁଲ ମାଳ ପିନ୍ଧାଇ ଦିଆଯାଏ।)

ଅବନୀ : ଜୟ ଶ୍ରୀରାମ। ଭାଇମାନେ ଅବନୀ ସୁନ୍ଦର ଦେଶପାଣ୍ଡେ ଆପନମାନକୁ ନମସ୍କାର ଜନାଉଛି। ମନ୍ଦିର କଥା ମୁଁ ପ୍ରଥାବ ଦେଇଥିଲା। ଆର୍ ଆପନମାନେ ଶ୍ରୀରାମ ମନ୍ଦିର ନିର୍ମଣ କମିଟିର ମତେ ସଭାପତି କେରିଦେଲା। ଆର୍ କେହିଲା ମନ୍ଦିର ଏକଶାଲ ଭିତରେ କଂପ୍ଲିଟ୍ ହେବ। ଭାଇମାନେ ମୁଁ ମନା କେରୁଥିଲା - ଆପନ ମୋତେ ଉପରେ ବେସାଇ ଦେଲା। ମନ୍ଦିର ଦେଉଛନ୍ତି ଗୁଟେ ବଡ଼ା କମ୍। ଏଇ କାମଟା କଂପ୍ଲିଟ୍ କେରିବାକୁ ସମୟ ଦରକାର। ରୁପେୟା ଦରକାର। ଆର ଆପନମାନଙ୍କର ସାହାଯ୍ୟ ଦରକାର। ଆପନମାନେ ମୋତେ ମନ୍ଦିର ନିର୍ମାଣ କାମ ଦେଇଛି। ଅବନୀ ସୁନ୍ଦର ମନା କରିଦେବ - ନାଏଁ। ଅବନୀ ସୁନ୍ଦର ମନାକରି ପାରିବ ନାଏଁ। (ତାଳି)
ଏଇ ମୋର ଜବାନ ବଂଧୁମାନେ ହମେ ମଦଦ କରିବାକୁ ଆଗେଇ ଆସିଛି। ତେଣୁ ହମରା ସାହସ ବଡିଯାଇଛି। ଏଇ କାମଟା କେରିବାକୁ ଅବନୀ ସୁନ୍ଦର ମୁଣ୍ଡରେ ଭଗବାନ ଦିମାକ ଦେଇଛି। ବହୁତ ବଡ଼ା ଦିମାକ ଦେଇଛି। ଅବନୀ ସୁନ୍ଦର ଦିମାକ ଲେଗାଇବ ଆର୍। ଆପନମାନେ ହାତର ତାକତ ଲଗାଇବ। ଏମିତି ତାକତ ଲେଗାଇବ

ଯେ, ଆସନ୍ତା ରାମ ନବମୀରେ ମନ୍ଦିର ଖଡ଼ା ହୋଇଯିବ। ଜୟ ଶ୍ରୀରାମ
ମେରେ ସାଥ ସୁର ମିଲାଇଏ ଭାଯୌଁ ........... (ଗୀତ)

ମଙ୍ଗଲ ଭବନ ଅମଙ୍ଗଲ ହାରି - ଦ୍ରବହୁଁଶ ଦଶରଥ ଅଜିର ବିହାରୀ..

(କରତାଳୀ ଧ୍ୱନି ସହିତ ଅବନୀ ସୁନ୍ଦର, ବୁଡା ମଞ୍ଚୁ ଚାଳିଯାଆନ୍ତି। ସେ ଗୀତ ପାଳିଧରି ସୁତ୍ରଧର ମାନଙ୍କର ପ୍ରବେଶ।)

ସୁତ୍ର (୧) : ଆଜ୍ଞା ଇଏ ହେଲେ ଅବନୀ ସୁନ୍ଦର ଦେଶପାଣ୍ଡେ। ଏ ଦେଶ ପାଇଁ, ଏ ଜାତି ପାଇଁ ସବୁ କିଛି ଦେଇଦେବାକୁ ପ୍ରସ୍ତୁତ।

ସୁତ୍ର (୨) : ଜନତା ନାରାୟଣଙ୍କ ସେବା ପାଇଁ ଏ ଅଞ୍ଚଳରେ ଚାରିଗୋଟି ଠିପିଖୋଲା ମଦ ଦୋକାନ ସହିତ ହୋଟେଲ ଖୋଲିଦେଇଛନ୍ତି। ଏଇ କରିତକର୍ମା ଲୋକଙ୍କ ନାଁରେ ଏଗାରଟି ରେପ୍, ଶତରଟି ମଡ଼ର୍ କେସ୍ ଥାଇ ମଧ୍ୟ ସେ ଅଞ୍ଚଳର ହର୍ତ୍ତା କର୍ତ୍ତା ଦଇବ ବିଧାତା.....। ଆମ ମୁଖ୍ୟମନ୍ତ୍ରୀଙ୍କ ଖାସ୍ ଲୋକ।

(ଏଇ ସମୟରେ ଗୋଟିଏ କ୍ରିକେଟ ବଲ ଆସି ମଂଚରେ ପଡ଼ିଲା...। ସୂତ୍ରଧର ଚମକି ପଡ଼ିଲେ।)

ବାଃ ଦେଖୁଛନ୍ତି ତ କ୍ରିକେଟ। ଦେଶସାରା ସମସ୍ତେ ୟା' ପଛରେ ଲାଗି ପଡ଼ିଛନ୍ତି। କ୍ରିକେଟ ମ୍ୟାଚ ଚାଲିଚ ତ-ସବୁ ବନ୍ଦ।

ସୁତ୍ର (୧): ଅଫିସ୍ ବନ୍ଦ, କଚେରୀ ବନ୍ଦ, ସ୍କୁଲ୍ ବନ୍ଦ, କଲେଜ୍ ବନ୍ଦ, ଖାଲି ଟିଭି ପାଖରେ ଭିଡ଼। ମା' ପିଲାକୁ ପେଇବାକୁ ଛାଡ଼ି ଖେଳ ଦେଖିବାକୁ ହାଜର... ଧନ୍ୟରେ କ୍ରିକେଟ୍ ଧନ୍ୟରେ ଭାରତବର୍ଷ..... ଆଛା ଦେଖିବା ଏ ବଲଟା କୋଉଠୁ ଆସିଛି..।

ସୁତ୍ର (୨): କୋଉଠୁ ଆସିଛି। ସେ କୋଠା ଉପରକୁ ଦେଖୁନ.... ସେ ପିଲାଟି ସେଠି ଠିଆ ହୋଇ ବଲଟି ମାଗୁଛି.....।

ସୁତ୍ର (୧): ଆରେ ଠିକ୍ କଥାତ। ସେଇଠି ସେ ଦଣ୍ଡପାଣି ବାବୁଙ୍କ ଘରେ କେହି ଜଣେ ଆସି ରହିଗଲେଣି ବୋଧହୁଏ।

ସୁତ୍ର (୨): ଶୁଣୁଥିଲି ଜଣେ କଲେଜ ଅଧ୍ୟାପକ ତାଙ୍କ ଫାମିଲିଧରି ଭଡ଼ାରେ ରହିଛନ୍ତି।

ସୁତ୍ର (୧): ଆଛା ଆଛା ଦେଖିବା ଚାଲ....... ସେଠି ଖେଳ କେମିତି ଚାଲିଛି।



# ଦୃଶ୍ୟ - ୨

<u>ଅଭିନୟାଞ୍ଚଳ - ୨</u> :

*।। ମୁନା, ଦିପ୍ତି, ଦଣ୍ଡପାଣି, ବିଭୂ ।।*

(ବିଭୂ ପ୍ରସାଦଙ୍କ ବୈଠକ ଗୃହ । ମଂଚ ଅନ୍ଧାର ହୋଇଛି । ତା' ଭିତରୁ ଦୀପ୍ତିଙ୍କ କଣ୍ଠସ୍ୱର ଓ ମୁନାର କଣ୍ଠସ୍ୱର ଶୁଣାଯାଉଛି)

ଦିପ୍ତୀ : ମୁନା... ମୁନା... ।

ମୁନା : କ'ଣ ଅପା ।

ଦୀପ୍ତି : ପାଠପଢା ଛାଡ଼ି ସକାଳୁ ସକାଳୁ କ୍ରିକେଟ୍ ଖେଳ ଆରମ୍ଭ ହେଇଗଲା । ଘରକୁ ଆସି ପଢା ପଢି କର ।

ମୁନା : ଯାଉଛି ଅପା ।

(ଆଲୋକ ଆସିଛି । ମୁନା ଗୋଟିଏ ବହିଧରି ପାଠ ପଢୁଛି । ପାଖରେ ଅଛନ୍ତି ଦିପ୍ତୀ ।)

ମୁନା : ପ୍ରଥମେ ମଣିଷ ଜଙ୍ଗଲ ଭିତରେ ବାସକରୁଥିଲା । ବନ୍ୟଜନ୍ତୁମାନଙ୍କ ଠାରୁ ରକ୍ଷାପାଇବା ପାଇଁ ପଥର ତିଆରି ଏକ ପ୍ରକାର ଅସ୍ତ୍ର ଦ୍ୱାରା ନିଜକୁ ବଂଚାଉଥିଲା । ତାକୁ ନିଆଁର ବ୍ୟବହାର ଜଣାନଥିଲା । ହଠାତ୍ ଦିନେ ଜଙ୍ଗଲରେ ନିଆଁ ଲାଗିଗଲା । ସେ ନିଆଁରେ କିଛି ଜୀବଜନ୍ତୁ ପୋଡ଼ିଗଲେ । ସେ ପୋଡ଼ା ମାଂସ ମଣିଷକୁ ସୁସ୍ୱାଦୁ ଲାଗିଲା । ତା'ପରେ ମଣିଷ ନିଆଁ ସୃଷ୍ଟି କରିବାକୁ ଲାଗିପଡ଼ିଲା ।

ଦଣ୍ଡ : (ପ୍ରବେଶ) ପ୍ରଫେସର ସାହେବ ଘରେ ଅଛନ୍ତି ନା.....।

ଦୀପ୍ତି : ନମସ୍କାର ମଉସା। କ'ଣ କାମଥିଲା। ସେ ଏବେ ଘରେ ନାହାଁନ୍ତି। କଲେଜ ଯାଇଛନ୍ତି।

ଦଣ୍ଡ : କଲେଜ ? ବୁଝିଲୁ ମା' ଦେଖେଯେ ତା'ଭିତରେ ଏତେ ସକାଳୁ ସକାଳୁ କଲେଜ କାହିଁକି ?

ଦୀପ୍ତି : ପ୍ରିନ୍‌ସପାଲଙ୍କ ପାଖରେ କ'ଣ ଟିକିଏ କାମ ଅଛି। ଆପଣ ବସନ୍ତୁ ସେ ଏବେ ଫେରି ଆସିବେ। ମୁଁ ଆପଣଙ୍କ ପାଇଁ ଚା କରି ଆଣୁଛି।

ଦଣ୍ଡ : ବୁଝିଲୁ ମା' ଦେଖଯେ ତା'ଭିତରେ ତୁ କାହିଁକି ମୋ ପାଇଁ ହଇରାଣ ହେବୁ। ବ୍ଲଡ଼ ପ୍ରେସରକୁ ସୁଗାର୍। ଦିଟାଯାକ ବଜାତ ବେମାରୀ ମୋତେ ବାନ୍ଧି ପକେଇଛନ୍ତି।

ଦୀପ୍ତି : ବିନା ଚିନିରେ ଚା କରିଦେଲେ ଖାଇବେନି।

ଦଣ୍ଡ : ଠିକ୍ ଅଛି... ଆଣ...। ମୋ ପକେଟରେ ସୁଗାର ଫ୍ରି ଅଛି। ବୁଝିଲୁ ମା' ଦେଖେଯେ ତା'ଭିତରେ ନହେଲେ ପାଟି ବାରୁଛି।

(ଦୀପ୍ତି ଚାଲିଗଲେ। ଦଣ୍ଡପାଣି ଯାଇ ମୁନା ପାଖରେ ବସିଗଲେ।)

ଦଣ୍ଡ : ହୁଁ, ତୁମ ନାଁଟା କ'ଣ ବାପା ?

ମୁନା : ମୁନା, ମହେଶ ପ୍ରସାଦ ଦାସ।

ଦଣ୍ଡ : ବାଃ, ବୁଝିଲ ବାପା ମହେଶ ମାନେ ଶିବ-ହରହର ମହାଦେବ। ଦେଖଯେ ତା'ଭିତରେ ଫାଷ୍ଟକ୍ଲାସ ନାଁଟା-। ହୁଁ- କେଉଁ କ୍ଲାସରେ ପଢୁଛ?

ମୁନା : ପଞ୍ଚମ।

ଦଣ୍ଡ : ପ୍ରଫେସର ବାବୁଙ୍କର ଶଳା ହେବନା...। ବୁଝିଲ ବାପା ମନଦେଇ ପାଠପଢ। ଭିଣୋଇ କେମିତି ପାଠପଢି ପ୍ରଫେସର ହେଇଛନ୍ତି। ତୁମେ ସେମିତି ଗୋଟେ ବଡ଼ ଅଫିସର ହେବ।

ମୁନା : ମୁଁତ ଭଲପାଠ ପଢୁନି। ଅଫିସର କେମିତି ହେବି। ମନ୍ତ୍ରୀ ହେଇଯିବି।

ଦଣ୍ଡ : ଏଁ ଭଲ ପଢୁନ - ବୁଝିଲ ବାପା ଦେଖଯେ ତା'ଭିତରେ ମନ୍ତ୍ରୀ କେମିତି

ହେବ। ମନ୍ତ୍ରୀ ହେବାକୁ ହେଲେ ଇଲେକ୍‌ସନ୍‌ରେ ଜିତିବାକୁ ପଡ଼ିବ। ସେ କ'ଣ ସହଜ କଥା।

ମୁନା : ଟଙ୍କା ପାଖରେ ବାଘ ଲାଂଜଟେକି ନାଚେ। ଇଲେକ୍‌ସନ୍‌ରେ ଜିତିବାକୁ ଦରକାର ଟଙ୍କା ଓ ଟିଣଟିଣ ମଦ। ମୁଁ ପାଇଯିବି।

ଦଣ୍ଡ : ଆଚ୍ଛା ଏସବୁ କଥା ତୁମେ ଏ ବୟସରୁ ଶିଖିଗଲଣି। ବୁଝିଲ ବାପା ସବୁଦିନ କ'ଣ ଏଇ ଟଙ୍କା ଆଉ ମଦ ଦ୍ୱାରା ଭୋଟ କିଣିହେବ। ଦେଖସେ ତା'ଭିତରେ ଯୁଗ ବଦଳି ଯିବନି।

ମୁନା : ଆମ ଜେଜେ କୁହନ୍ତି ଆମ ଭାରତ ବର୍ଷରେ ହଠାତ୍ କିଛି ବଦଳି ଯାଏନି। ବହୁତ ସମୟ୍ ଲାଗେ। ଯଦି ମନ୍ତ୍ରୀ ହେଇପାରିବିନି ତାହେଲେ ଡ଼କାୟତ ହେଇଯିବି।

ଦଣ୍ଡ : ଆଁ ଏକାବେଳେକେ ଏତେ ତଳକୁ। କାହିଁ ମନ୍ତ୍ରୀ କାହିଁ ଡ଼କାୟତ... ?

ମୁନା : ତଳକୁ କାହିଁକି। ଦି ଜଣଯାକ ସମାନ। ବରଂ ଡ଼କାୟତ ମନ୍ତ୍ରୀ ଅପେକ୍ଷା ବହୁତ ଗୁଣରେ ଭଲ।

ଦଣ୍ଡ : କେମିତି ?

ମୁନା : ମନ୍ତ୍ରୀ ଲୋକଙ୍କ ସେବା କରିବାକୁ କହି ଡ଼କାୟତି କରେ। ଧରାପଡ଼ିଲେ ବି ଦଣ୍ଡ ପାଏନି। ଡ଼କାୟତ ନିଜର ପେଟପାଇଁ ଡ଼କାୟତିକରେ, ଧରାପଡ଼ିଲେ ଦଣ୍ଡପାଏ।

ଦଣ୍ଡ : ବାଃ ମୁନା ବାବୁ ବାଃ, ବହୁତ ଅକଲ କଥା କହୁଛ।

ଦୀପ୍ତି : (ଚା'ଧରି ଆସିଛି। ମୁନା ଗପ ଆରମ୍ଭ କରିହେଲୁଣି ନା....।)

ଦଣ୍ଡ : ଭାରି ଦୁସିଆର ପିଲା... ମା - ଦେଖସେ ତା'ଭିତରେ ଏ ବୟସରେ ବି ସେ ଏ ଦୁନିଆକୁ ଚିହ୍ନିଗଲାଣି। (ଚା'ନେଇ ଓଠରେ ଲଗାଇ) ବାଃ ଫାଷ୍ଟକ୍ଲାସ୍ ଚା...। ବହୁତ ବଢିଆ ହେଇଛି। ବୁଝିଲୁ ମା' ଚିନି, କ୍ଷୀର, ଚା ମିଶାଇ ଗରମ କଲେ ଚା। କିନ୍ତୁ ଏଇଟା ସହଜ ନୁହେଁ। ଦେଖସେ ତା'ଭିତରେ କେତେ ପରିମାଣ ପାଣିରେ କେତେ ପରିମାଣ ଚା'ଦେଇ କେତେ ଡ଼ିଗ୍ରୀ ଗରମ କଲେ ଚା' ସୁସ୍ୱାଦୁ ହେବ ସେକଥା ସମସ୍ତେ ଜାଣନ୍ତିନି। ବୁଝିଲୁ ମା' ଦେଖସେ ତା'ଭିତରେ ପ୍ରଫେସର ସାହେବ ଆସିଗଲେଣି। ନମସ୍କାର ପ୍ରଫେସର ସାହେବ।

ବିଭୂ : (ପ୍ରବେଶ) ନମସ୍କାର । ଦୀପ୍ତି.... ରୋଷେଇ ସାରିଦେଲଣି ନା ? ମୋତେ ଦଶ ମିନିଟ୍ଟ ଭିତରେ କଲେଜ ବାହାରିଯିବାକୁ ପଡ଼ିବ । ଆଜି ଇନୁଭରସିଟି ପରୀକ୍ଷା ।

ଦଣ୍ଡ : ଯା ଯା ମା - ତୁ ଜଲଦି କାମ ସାରିଦେ । ମୁଁ ବରଂ ପରେ ଆସିବି ।

ବିଭୂ : ଏବେ ଟିକିଏ ମୁଁ ଜଲଦିରେ ଅଛି । ପରେ-ସନ୍ଧ୍ୟା ବେଳକୁ ଆସିବେ ।

ଦଣ୍ଡ : ଆସିବି- ନିଶ୍ଚୟ ଆସିବି । ବୁଝିଲେ ପ୍ରଫେସର ସାହେବ ମୋତେ ଅନ୍ୟ ଘରବାଲା ସହିତ ଦେଖଯେ ତା'ଭିତରେ ତୁଳନା କରିବେନି । ଘର ମାଲିକ ହେବା ସଂଗେ ସଂଗେ ମୁଁ ଆପଣଙ୍କର ପଡ଼ୋଶୀ । ମଝିରେ ମଝିରେ ଆପଣଙ୍କ କଥା ବୁଝିନଗଲେ ଆପଣଙ୍କର ଏଠି ଆଉକିଏ ଅଛି । ଆସୁଛି ଦେଖଯେ ତା ଭିତରେ ସଂଧ୍ୟାବେଳକୁ ଦେଖା ହେବ... ।

(ଦଣ୍ଡପାଣି ଚାଲିଯାଆନ୍ତି ।)

ଦୀପ୍ତି : କ୍ୱାଟର କଥା କ'ଣ ହେଲା ।

ବିଭୂ : ଯାହା ବୁଝିଲି ଆମକୁ ନିକଟରେ କ୍ୱାଟର ମିଳିବାର ନାହିଁ ।

ଦୀପ୍ତି : ଦାଶବାବୁ କ୍ୱାଟର ଛାଡ଼ିଦେବେ ବୋଲି କହୁଥିଲେ ।

ବିଭୂ : ନା ସେ ଏଠୁ ଟ୍ରାନ୍ସଫର ହେଇଥିଲେ ସୁଦ୍ଧା କ୍ୱାଟର ରଖିବେ । ତାଙ୍କ ଶଳା ଏଜୁକେସନ ସେକ୍ରେଟାରି-ପ୍ରିନ୍ସିପାଲ ତାଙ୍କୁ କିଛି କହିପାରିବେନି ।

ଦୀପ୍ତି : ତା'ବୋଲି ଆମେ ମାସକୁ ମାସ ଏଠି ଚାରିହଜାର ଟଙ୍କା ଘରଭଡ଼ା ଦେଇ ରହିବୁ ।

ବିଭୂ : ତା' ଛଡ଼ା ଆଉ କ'ଣ ଚାରା ଅଛି ।

ଦୀପ୍ତି : ସେ ଲୋନ୍ କଥା - ବ୍ୟାଙ୍କ ମ୍ୟାନେଜର କ'ଣ କହିଲେ ।

ବିଭୂ : ବ୍ୟାଙ୍କ ମ୍ୟାନେଜର ଯେମିତି କଣ୍ଡିସନରେ ଟଙ୍କା ଦେବାକୁ କହୁଛନ୍ତି ସେଥିରେ ଆମେ ସୁଧ ଦେଇ ଦେଇ ନଯ୍ୟନ୍ତ ହେଇଯିବା ।

ଦୀପ୍ତି : ଏଣେ ବାପାଙ୍କ ଅପରେସନ ଡ଼େଟ୍ ଠିକ୍ ହେଇଯାଇଛି । ଯେମିତିହେଲେ ପନ୍ଦର ଦିନ ଭିତରେ ଚାରି ପାଞ୍ଚଲକ୍ଷ ଟଙ୍କା ଯୋଗାଡ଼ କରିବାକୁ ହେବ ।

ବିଭୂ : ଭାବୁଛି ଗାଁର ସେ ଢ଼ିହଟା ବିକ୍ରୀକରି ଦେବି ।

ଦୀପ୍ତି : ତୁମେ ଭଲଭାବରେ ଜାଣିଛ କେତେ ମାଲି ମୋକଦମା ପରେ ସେ ଭିଡ଼ଟା ବାପାଙ୍କ ନାଁକୁ ଆସିଛି । ତାଙ୍କ ଚିକିତ୍ସା ପାଇଁ ଆମେ କିଛି ଯୋଗାଡ଼ ନକରି ସେ କାଗାଟା ବିକିଦେଲେ ସେ କ'ଣ ଭାବିବେ ।

ବିଭୂ : ତା' ହେଲେ ମୁଁ କ'ଣ କରିବି କୁହ । ଏଠି ଘରଭଡ଼ା-ଇଲେକ୍ଟ୍ରି ବିଲ୍, କ୍ଷୀର ବିଲ୍ ଛଡ଼ା ସାନଭାଇ ବିବେକ ପାଖକୁ ମାସକୁ ମାସ ଚାରିହଜାରରୁ ସାଢେ ଚାରିହଜାର ଦେଲେ ଯାହା ରହୁଛି ସେଥିରେ ଚଳିବା କଷ୍ଟ ।

ଦୀପ୍ତି : କଷ୍ଟ ହେଉପଛେ ତୁମେ GPFରେ ଯାହା ଅଛି ଉଠାଇ ଆଣ । କିଛି ନ ହେଲେ ମୋ ସୁନା ଗହଣାକୁ ବିକ୍ରୀ କରିବାର ବନ୍ଦୋବସ୍ତ କର । ଘରକୁ ଆସୁଥିବା କ୍ଷୀର ଇତ୍ୟାଦି କମାଇ ଖର୍ଚ୍ଚକାଟ କର ।

ବିଭୂ : କ'ଣ ତୁମେ କହୁଛ । ତୁମେ ବର୍ତ୍ତମାନ ଆଡ଼ଭାନ୍‌ସଡ୍ ଷ୍ଟେକ୍‌ରେ, ତୁମକୁ ଯାହା ଦିଆଯିବା କଥା ଦିଆଯାଇ ପାରୁନି । ଘରକୁ କ୍ଷୀର ଆଣିବା ବନ୍ଦ କରିଦେବି ।

ଦୀପ୍ତି : ଦେଖ ବାପାଙ୍କ ଚିକିତ୍ସା ଆମର କର୍ତ୍ତବ୍ୟ । ତୁମେ ମନାକରନି ।

ବିଭୂ : ଠିକ୍ ଅଛି, ଚାଲିଲ କଲ୍‌ଦି ମୋତେ ପୁଣି କଲେଜ ବାହାରିବାକୁ ପଡ଼ିବ ଆଜିଠୁ ପରୀକ୍ଷା ଆରମ୍ଭ ।

ଦୀପ୍ତି : ଆସ... ରୋଷେଇ ଶେଷ ହେଇଯାଇଛି । (ଦୁହେଁ ଚାଲିଗଲେ)



## ଦୃଶ୍ୟ - ୩

### ଅଭିନୟାଞ୍ଚଳ - ୨

।।ମୁନା, ବୁଡା, ମଞ୍ଜୁ, ଦୀପ୍ତି,
ବିଭୂ, ଦଣ୍ଡ, ପ୍ରବୀର କଣ୍ଠସ୍ୱର।।

(ବିଭୂ ପ୍ରସାଦଙ୍କ ସେଇ ଘର, ସମୟ ଅପରାହ୍ନ। ମୁନା ସେଇଠି ବସି ବହିଧରି ପଢୁଛି। ବାହାରୁ ପଶିଛନ୍ତି ବୁଡା ଆଉ ମଞ୍ଜୁ।)

ମୁନା : (ପଢୁଛି) ସମାଜ ଭିତରେ ରହିବାକୁ ହେଲେ ସାମାଜିକ ରିତି ବ୍ୟବସ୍ଥା ମାନିବାକୁ ପଡ଼ିବ। ନିଜର ସ୍ୱାର୍ଥପାଇଁ ସାମାଜିକ ବ୍ୟବସ୍ଥାକୁ ଅସ୍ୱୀକାର କରିବା ନିୟମ ବିରୁଦ୍ଧ। ସେଥିପାଇଁ ଦଣ୍ଡ ଭୋଗିବାକୁ ପଡ଼ିବ...।

ବୁଡା : ଅରେ ବାବୁ ଘରେ କିଏ ଅଛି ଡ଼ାକି ଦେ ତ।

(ମୁନା ଭିତରକୁ ଯାଇଛି, ତା' ବହିପତ୍ର ଧରି)

ମଞ୍ଜୁ : ଏଇ ଲୋକଟା କ'ଣ ହେଇପାରେ ବୁଡା... ?

ବୁଡା : କୋଉଟା.... ?

ମଞ୍ଜୁ : ମାନେ ଏ ଘରେ ଯିଏ ରହୁଛି। ଅଫିସର, କିରାନି, ଡ଼ାକ୍ତର ନା ଇଂଜିନିୟର।

(ଦୀପ୍ତି ଆସନ୍ତି)

ଦୀପ୍ତି : ଆପଣମାନେ କାହାକୁ ଖୋଜୁଛନ୍ତି ?

ମଞ୍ଜୁ : ନା' ସେମିତି ପାଟିକୁଲାର୍ଲି କାହାକୁ ଖୋଜୁନୁ। ଛୋଟିଆ କାମ ପାଇଁ ଆସିଛୁ। କହିଦେଇ ଚାଲିଯିବୁ।

ଦୀପ୍ତି : ସେ ବର୍ତ୍ତମାନ ସୁଦ୍ଧା କଲେଜରୁ ଫେରି ନାହାଁନ୍ତି ।

ମଞ୍ଜୁ : ଲେକ୍‌ଚର୍‌ର ବୋଧହୁଏ ?

ଦୀପ୍ତି : ହଁ ।

ମଞ୍ଜୁ : ଠିକ୍ ଅଛି । ଆପଣଙ୍କୁ କହିଦେଲେ ଚଳିବ ।

ବୁଡା : ଏବେ ଆପଣ ଆମ ସାହିରେ ନୂଆକରି ରହିଛନ୍ତି । ଆମର ଏଠି ବିଭିନ୍ନ ପ୍ରକାର ପୂଜାହୁଏ । ଗଣେଶ ପୂଜାଠୁ ଆରମ୍ଭ କରି ଦୁର୍ଗାପୂଜା, ଲକ୍ଷ୍ମୀପୂଜା, କାଳୀପୂଜା ଇତ୍ୟାଦି ଇତ୍ୟାଦି ।

ମଞ୍ଜୁ : ସେଥିପାଇଁ ପ୍ରତ୍ୟେକ ପରିବାର କିଛି କିଛି ସାହାଯ୍ୟ କରନ୍ତି ।

ଦୀପ୍ତି : ହଁ ସମୁହ କାମପାଇଁ ସମସ୍ତେ ସାହାଯ୍ୟ କରିବା କଥା । କିନ୍ତୁ ନିକଟରେ କୌଣସି ପୂଜା ନାହିଁ ।

ମଞ୍ଜୁ : ନାହିଁ । ସେଇଟା ଠିକ୍ କଥା । କିନ୍ତୁ ଆମ ପୂଜା କମିଟିର ସିଷ୍ଟମ୍‌ଟା ଅଲଗା । ବାରଂବାର ଆସି ଆକଣଙ୍କୁ ଚାନ୍ଦା ଦିଅ ଚାନ୍ଦା ଦିଅ କହିଲେ ଆମର ସମୟ ନଷ୍ଟ ହେବା ସଂଗେ ସଂଗେ ଆପଣ ବୋର ହୋଇଯିବେ । ସେଥିପାଇ...... । ବୁଡା..... ସେ ଡ଼ବାଟା ଦେଇଦେ । ଏଇ ଦେଖନ୍ତୁ ଏଇଟାକୁ ଆପଣଙ୍କୁ ରଖିବାକୁ ପଡ଼ିବ । ଆପଣଙ୍କ ପରିବାର ପାଇଁ ଯେତିକି ସ୍ଥିର ହେବ ଆପଣ ପ୍ରତ୍ୟେକ ଦିନ ସେତିକି ଏଥିରେ ଗଳେଇବେ ।

ବୁଡା : ମାସ ଶେଷରେ ଆମଲୋକ ଆସି ଏଇଟା ନେଇଯିବେ ପୁଣି ଏକ ନୂଆ ଡ଼ବା ଦେଇଯିବେ ।

ଦୀପ୍ତି : ତା'ମାନେ ପ୍ରତ୍ୟେକ ମାସରେ ପୂଜା ଚାନ୍ଦା ।

ମଞ୍ଜୁ : ଖାଲି ପୂଜା ନୁହେଁ ତା' ଭିତରେ ସ୍ୱାଧୀନତା ଦିବସ, ଗଣତନ୍ତ୍ର ଦିବସ, ସାଇର ଫୁଟବଲ ମ୍ୟାଚ୍, କ୍ରିକେଟ୍ ଟୁର୍ଣ୍ଣାମେଣ୍ଟ - ରାମ ମନ୍ଦିର ନିର୍ମାଣ -ଏ ସବୁ ଅଛି ।

ବୁଡା : ନିଅନ୍ତୁ ଏଇଟା ରଖନ୍ତୁ ।

ମଞ୍ଜୁ : ନିଅନ୍ତୁ । ପ୍ରତ୍ୟେକ ଦିନ ଏଥିରେ କୋଡ଼ିଏ ଦୋଡ଼ିଏ ଟଙ୍କା ଗଳେଇବେ ।

ଆପଣଙ୍କ ସ୍ୱାମୀ Govt. କଲେଜ ଅଧ୍ୟାପକ । ତାଙ୍କ ଦରମାକୁ ଦେଖି ଠିକ୍ କରାଯାଇଛି । ନିଅନ୍ତୁ ।

ଦୀପ୍ତି : ନା', ମୁଁ ଏଇଟା ରଖି ପାରିବିନି ।

ମଞ୍ଜୁ : (ହସି) କାହିଁକି ?

ଦୀପ୍ତି : ସେ ଫେରନ୍ତୁ ତାଙ୍କୁ ଦେବେ ।

ମଞ୍ଜୁ : କିଛି ଅସୁବିଧା ହେବନି, ରଖନ୍ତୁ । ପ୍ରଥମେ ପ୍ରଥମେ ଏସବୁ ଅଡୁଆ ଲାଗିବ । ବି, ତିନି ମାସପରେ ଅଭ୍ୟସ୍ତ ହେଇଯିବେ ।

ଦୀପ୍ତି : ମୁଁ ରଖିପାରିବିନି । ସେ ମୋତେ ଗାଳିଦେବେ ।

ବୁଡା : (ଚଡା ଗଳାରେ) ଗାଳି ଦେବେ । ସେ କଥା ଆମେ ବୁଝିବୁ । ଆପଣ ଏଇଟାକୁ ରଖନ୍ତୁ । (ବୁଡା ଡ଼ବାଟିକୁ ରଖିଦିଏ)

ଦୀପ୍ତି : ଆପଣ ସେଇଟାକୁ ନେଇଯାଆନ୍ତୁ । ସେ ଆଉ କିଛି ସମୟପରେ ଫେରିବେ । ସେତେବେଳେ ଆସି ଦେଇଯିବେ ।

ବୁଡା : (ରାଗି) ଏ । (ମଞ୍ଜୁ ବୁଡାକୁ ଅଟକାଏ)

ମଞ୍ଜୁ : ଆପଣ ଯାହା ଭାବୁଛନ୍ତି କିଛି ଅସୁବିଧା ହବନି । ସାଇର ପ୍ରତ୍ୟେକ ପରିବାର ଏ ଚାନ୍ଦା ଦେଉଛନ୍ତି । ଏ ଘରେ ଆପଣଙ୍କ ଆଗରୁ ଯିଏ ରହୁଥିଲେ ସେ ଦେଉଥିଲେ । ଆପଣ ଦେବେ । ଆପଣଙ୍କପରେ ଯେଉଁମାନେ ରହିବେ ସେ ବି ଦେବେ ।

ବୁଡା : ଏଇ କଥାଟା ଆପଣଙ୍କ ସ୍ୱାମୀକୁ ବୁଝେଇ ଦେବେ । ସେ ଯଦି ବୁଝିପାରିବେନି ଆମ ପାଖକୁ ପଠାଇ ଦେବେ । ଲାଲ ଚଉକ ପୂଜା କମିଟି ସାଇନ୍‌ବୋର୍ଡଟା ବଡ଼ ବଡ଼ ଅକ୍ଷରରେ ପରିଷ୍କାର ଭାବରେ ଲେଖାହୋଇଛି ।

(ମଞ୍ଜୁ ବୁଡା ଚାଲି ଯାଆନ୍ତି । ମୁନା ଆସେ ଚା' ହାତରେ ବହି)

ମୁନା : ପରାଙ୍ଗପୁଷ୍ଟ ମାନେ କ'ଣ ଅପା ?

ଦୀପ୍ତି : (ନିରବ)

ମୁନା : ପଚାରୁଛି ପରା ପରାଙ୍ଗପୁଷ୍ଟ ମାନେ କ'ଣ ?

ଦୀପ୍ତି : ଯିଏ ଅନ୍ୟର ଆହାରଖାଇ ବଞ୍ଚେ ।

ମୁନା : ମାନେ .... ।

(ଦୀପ୍ତି ବୁଢା, ମଞ୍ଜୁ ଯିବା ରାସ୍ତାକୁ ହାତ ଦେଖାଇ ଦିଅନ୍ତି । ମୁନା କିଛି ବୁଝିନପାରିଲା ଭଳି ଚାହିଁ ରହେ । ମଞ୍ଜୁ ଓ ବୁଢା କଣ୍ଠରେ ଶେଷ ସଂଳାପ ଦୁଇଟି ପ୍ରତିଧ୍ୱନିତ୍ୱ ହୁଏ । ପରେ ପରେ ମୁନା ଚାଲିଯାଏ । ଆସନ୍ତି ବିଭୂ ।)

ଦୀପ୍ତି : ତୁମର ଫେରୁ ଫେରୁ ଏତେ ଡ଼େରି ହେଲାଯେ ?

ବିଭୂ : କଲେଜରେ ଗୋଟେ ଝମେଲା ହେଇଗଲା, ସେଇଥିପାଇଁ ।

ଦୀପ୍ତି : ମାନେ ?

ବିଭୂ : ପରୀକ୍ଷା ହଲରେ ବସି ଗୋଟେ ପିଲା କପି କରୁଥିଲା । ଦିଦିଟା ଓ୍ୱାର୍ଣ୍ଣିଙ୍ଗ ପରେ ମଧ୍ୟ ଦାଦାଗିରି ଦେଖାଇ କପିକରି ଚାଲିଲା । ତାକୁ ଧରି ରିପୋର୍ଟ କଲିବୋଲି ପ୍ରିନସ୍‌ପାଲଙ୍କ ଆଖିରେ ମୁଁ ହେଲି ଟାକ୍‌ଟଲେସ୍ । ସେ ପିଲା ଜଣେ ପଲ୍‌ଟିସିଆନ୍‌ର ପୁଅ । ଏ ସହରର ଦାଦା । ତା'କପି କରିବା ବିଷୟରେ ରିପୋର୍ଟ କରିବାଟା ମୋର ଭୁଲ ।

ଦୀପ୍ତି : ପ୍ରିନିସ୍‌ପାଲ ଯଦି ଚାହୁଁ ନାହାଁନ୍ତି ତୁମେ ରିପୋର୍ଟଟା ଫେରାଇ ଆଣିଲନି । ଆଗକୁ ଆମର କ୍ୱାଟର ପାଇବାର ଅଛି ।

ବିଭୂ : କ'ଣଯେ ତୁମେ କହୁଛ.... କ୍ୱାଟରଟେ ପାଇବି ବୋଲି ଯଉଟା ଅନ୍ୟାୟ ସେଇଟା ମାନିନେବି ? ମୁଁ କହିଦେଇଛି ପରୀକ୍ଷା ସୁପରିଟେଣ୍ଡେଣ୍ଟ ହିସାବରେ ସେ ମୋ ରିପୋର୍ଟଟା ପଠାଇ ନପାରନ୍ତି ।

ଦୀପ୍ତି : ସେ ପିଲା ଯଦି କିଛି ଅସୁବିଧା କାରେ ?

ବିଭୂ : ଅସୁବିଧା କ'ଣ କରିବ ? ବାପାଙ୍କୁ କହି ମୋର ଟ୍ରାନ୍‌ସଫର କରିବ । ଦରମାଟା ତ କାଟିଦେଇ ପାରିବନି ।

ଦୀପ୍ତି : ହଉ ମୁଣ୍ଡକୁ ଥଣ୍ଡା କରି ଆସ ଟିକିଏ ଚା' ଜଳଖିଆ ଖାଇନବ ।

ବିଭୂ : (ଡ଼ବାକୁ ଦେଖି) ଏଇଟା କ'ଣ ?

ଦୀପ୍ତି : ସେ କଥା ପରେ କହିବି । ଏବେ ଶୁଣିଲେ ମୁଣ୍ଡକୁ ରକ୍ତ ଚଢିଯିବ ।

ବିଭୂ : ମାନେ ...? ସଞ୍ଚୟ୍ କରିବାକୁ ରଖିଛ ?

ଦୀପ୍ତି : ହଁ ଦିନକୁ କୋଡ଼ିଏ କୋଡ଼ିଏ ଟଙ୍କା ସଂଚୟ୍ କରି ମାସ ଶେଷକୁ ସାଇ ପୂଜା ଅଫିସ୍‌ରେ ଦାଖଲ କରିବାକୁ ହେବ । ପୂଜା କମିଟିର ପିଲାମାନେ ଆସି ଦେଇଯାଇଛନ୍ତି ।

ବିଭୂ : ତା'ମାନେ - ଆମକୁ ସବୁଦିନ ପୂଜା ଚାନ୍ଦା ଦେବାକୁ ପଡ଼ିବ ।

ଦୀପ୍ତି : ସେଇଥିପାଇଁ କହୁଥିଲି ପଛେ କହିବି । ମୋର ଅନେକ ବାରଣ ସତ୍ତ୍ୱେ ଏଇଟା ରଖିଦେଇଯାଇଛନ୍ତି ।

ବିଭୂ : ମୁଁ ଆସିବା ପର୍ଯ୍ୟନ୍ତ ଅପେକ୍ଷା କଲନି କାହିଁକି ?

ଦୀପ୍ତି : ସେକଥା ବି କହିଛି । କହିଛନ୍ତି ତୁମେ ଯାଇ ତାଙ୍କୁ ଦେଖାକରିବ ।

ବିଭୂ : ନାଁ, ସେ କଥା ହେଇପାରିବନି । ଟଙ୍କା ଯୋଗାଡ଼ ହେଇପାରୁନି ବୋଲି ବାପାଙ୍କର ହାର୍ଟ ଅପରେସନ ଦିନ ଗଡ଼ି ଯାଉଛି । ତୁମର ଆଡ୍‌ଭାନ୍‌ସଡ୍ ଷ୍ଟେଜରେ ଯାହା ଖାଦ୍ୟ ଖାଇବା କଥା ହେଇହେଉନି । ସେମାନେ ଆମକୁ ପୂଜାଚାନ୍ଦା ପାଇଁ ବାଧ୍ୟ କରିଯିବେ । ଆମର ପୂଜା ଦରକାର ନାହିଁ କି ପୁଣ୍ୟ ଅର୍ଜନ ଦରକାର ନାହିଁ । (ଡ଼ବାକୁ ଫୋପାଡ଼ି ଦିଅନ୍ତି)

ଦଣ୍ଡ : (ପ୍ରବେଶ) କ'ଣ ସବୁ ଦରକାର ନାହିଁ ପ୍ରଫେସର ସାହେବ ଗୋଟେ ଜୋରଦାର ଆଲୋଚନା ଚାଲିଲା ଭଳି ଲାଗୁଛି ।

ବିଭୂ : ଆପଣଙ୍କ ସାହିରେ କ'ଣ ଏମିତି ପୂଜା ଚାଲିଛି ଯେ ଦଣ୍ଡପାଣିବାବୁ ଆମକୁ ଦିନକୁ କୋଡ଼ିଏ କୋଡ଼ିଏ ଟଙ୍କା ଲେଖେ ଦେବାକୁ କହିଯାଇଛନ୍ତି । ଆପଣମାନେ କେହି ଏହାର ପ୍ରତିବାଦ କରୁ ନାହାଁନ୍ତି ।

ଦଣ୍ଡ : କିଏ ପ୍ରତିବାଦ କରିବ ବାବା । ତାଙ୍କ ସାମାନାରେ ପାଟିଫିଟାଇଲେ ହଇଚଇ ସୃଷ୍ଟି କରିବେ ସିନା - ଦେଖଯେ ତା' ଭିତରେ ଆଉ କିଛି ହେଇ ପାରିବନି ।

ବିଭୂ : ତ'ବୋଲି ସେମାନେ ଅନ୍ୟାୟ କରି ଚାଲିବେ । ପୋଲିସ୍ କୋର୍ଟ କଚେରୀ କ'ଣ ଉଠିଗଲା ।

ଦଣ୍ଡ : ନା' ପ୍ରଫେସର ସାହେବ ନା', ସେ ପୋଲିସ କୋର୍ଟ କଚେରୀ କଥା ଉଠାନ୍ତୁନି । ଆପଣମାନେ ବାହାରୁ ଆସିଛନ୍ତି । ଆମେ ଖୋଦ୍ ଏଠିକାର

ବାସିନ୍ଦା ହୋଇ ସବୁ ସହିବାକୁ ପଡୁଛି । ମୁଁ ଆପଣଙ୍କୁ ହାତ ଯୋଡୁଛି ସେ ବିଷଧର ସାପମାନଙ୍କ ସହ ଲାଗିବେନି, ନଚେତ୍ ମୋ ଭଳି ଆପଣଙ୍କର ସବୁ ସର୍ବନାଶ ହୋଇଯିବ ।

ଦୀପ୍ତି : ମାନେ .......... ?

ଦଣ୍ଡ : ଏମାନେ ମଣିଷ ନୁହଁନ୍ତି ମା ଗୋଟେ ଗୋଟେ ମଣିଷରକ୍ତ ଖିଆ ରାକ୍ଷାସ । ଏଇଠି ରହିବାକୁ ହେଲେ ଦେଖଯେ ତା'ଭିତରେ ଏମାନଙ୍କ ସହିତ ସାଲିସ କରିବାକୁ ହେବ । ନ ହେଲେ ସବୁକିଛି ହରାଇବାକୁ ପଡ଼ିବ ।

ବିଭୂ : ହରାଇବାକୁ ପଡ଼ିବ ମାନେ .... ?

ଦଣ୍ଡ : ଏମାନଙ୍କର ହୃଦୟ୍ ବୋଲି କିଛି ନାହିଁ ପ୍ରଫେସର ସାହେବ । ମଣିଷର ଦୁଃଖ ବେଦନା ଏମାନେ ବୁଝନ୍ତିନି । ବୁଝିପାରୁଥିଲେ ମୋ ଏକମାତ୍ର ପୁଅକୁ ମୋ ପାଖରୁ ଛଡ଼େଇ ନେଇନଥାନ୍ତେ ।

ଦୀପ୍ତି : ମଉସା !

ଦଣ୍ଡ : ହଁ ମା - ଏ ପ୍ରଫେସର ଭଳି ମୋ ପୁଅ ବହୁତ ପାଠ ପଢିଥିଲା । M.A. ରେ ବହୁତ ନଂବର ରଖି ଇନଭରସିଟିରେ ମେଡ଼ାଲ ଆଣିଥିଲା । ଥରେ ଏମିତି କ୍ରିକେଟ୍ ଖେଳ ଚାନ୍ଦା ଆଦାୟନେଇ ପ୍ରତିବାଦ କରିଥିଲା । ଜବରଦସ୍ତ ଚାନ୍ଦା ନଦେବାକୁ ସାଇରେ ମନା କରିଥିଲା... । ବାସ୍ ତା'ର ଏତିକି ମାତ୍ର ଦୋଷ ପାଇଁ ତାକୁ ସବୁଦିନ ପାଇଁ ଏ ସଂସାରରୁ ବିଦାୟ୍ କରିଦିଆଗଲା । ମୋତେ ସବୁଦିନ ପାଇଁ ଅନ୍ଧକରି ଦିଆଗଲା । ମୋତେ ପାଗଳ କରିଦିଆଗଲା । (କାନ୍ଦିଛ) ମୁଁ ତୁମର ବାପ ସମାନ ବାପା.... ହାତଯୋଡ଼ି କହୁଛି ସୁବିଧା ହେଲେ ଅନ୍ୟ ଜାଗାକୁ ଚାଲିଯା, ହେଲେ ଏଠି ରହି ଏମାନଙ୍କର ଶତ୍ରୁ ହୁଅନି ।

(ପାଗଳଙ୍କ ଭଳି ଚାଲିଗଲେ..........)

ମୁନା : (ଅନ୍ତରାଳରୁ ପଢୁଛି) ତା'ପରେ ମଣିଷ ସଭ୍ୟତାର ଜୟଯାତ୍ରା ଆରମ୍ଭହେଲା । ମଣିଷର ସୁଖ ସ୍ୱାଛନ୍ଦ୍ୟପାଇଁ ସୃଷ୍ଟିହେଲା.... ସାଇକେଲ୍, ମୋଟର, ବ୍ୟୋମଜାନ, ରେଡ଼ିଓ ଟେଲିଭିଜନ... କିନ୍ତୁ

ତା ସହିତ ମଣିଷ ଚାହିଁଲା ଅନ୍ୟ ମଣିଷ ଉପରେ ଆଧିପତ୍ୟ। ଫଳରେ ସୃଷ୍ଟିହେଲା ମାରଣାସ୍ତ୍ର, ଶକ୍ତିଶାଳୀ ମେଗାଟନ ନିଉଟ୍ରନ ବୋମା।

ଦୀପ୍ତି : ଆରେ ଭାବୁଛ କ'ଣ - ତୁମେ କଲେଜ ଫେରି କିଛି ଖାଇନନା। ଭିତରକୁ ଆସ।

(ଦୀପ୍ତି ଚାଲିଗଲା ହଠାତ୍ ମଞ୍ଚ ଭିତରକୁ ଏକ କାଗଜ ଗୁଡ଼ା ପଥର ପଡ଼ିଲା। ବିଭୂ ପଥରଟି ଉଠେଇ ଦେଖିଲେ। ସେଥିରେ ଗୋଟେ ଚିଠି। ସେ ଚିଠି ଖୋଲି ପଢିଲେ। ଚିଠିର ଭାଷା ଅନ୍ତରାଳରୁ ଶୁଣାଗଲା।)

ଚିଠି : (ଅନ୍ତରାଳରୁ ପ୍ରବୀରସ୍ୱର) ଆବେ ଶଳା! ଆସନ୍ତା କାଲିଯାଇ ସେ ରିପୋର୍ଟ ଉଠେଇ ନେବୁ। ନହେଲେ ତୋ ସୁନ୍ଦରୀ ସ୍ତ୍ରୀକୁ ଉଠେଇ ନେବୁ। ବୁଝିଲୁ। ଆସନ୍ତା କାଲି.... ଆସନ୍ତା କାଲି.....।

ଦୀପ୍ତି : (ଜଳଖିଆ ନେଇ ଆସିଛି) କ'ଣ ଗୋଟେ ପଡ଼ିବାର ଶବ୍ଦ ହେଲା।

ବିଭୂ : କିଛି ନାହିଁତ।

ଦୀପ୍ତି : ଏ ଘରେ କ'ଣ ଗୋଟେ ପଡ଼ିବାର ଶବ୍ଦ ହେଲା। ହଉ ତୁମେ ଜଳଖିଆଟା ଖାଇଦିଅ।

ବିଭୂ : (ଜଳଖିଆ ଖାଇବାକୁ ଯାଇ ଅଟକି ଯାଏ)

(ପ୍ରତିଧ୍ୱନି- ହୁଏ - ରିପୋର୍ଟ ଉଠେଇ ନେବୁ ନହେଲେ ତୋ ସୁନ୍ଦରୀ ସ୍ତ୍ରୀକୁ -ଆସନ୍ତା କାଲି .... ଆସନ୍ତା କାଲି ....।)

ଦୀପ୍ତି : କ'ଣ ଏମିତି ଭାବୁଛ।

ବିଭୂ : ଉଁ.... ନା ....।

(ମୁନା ଗୋଟେ ବହିଧରି ଆସିଛି।)

ମୁନା : ଅପା - ଅପା - ତୁ କହୁଥିଲୁ ନା ମୋର ଓଡ଼ିଆ ଶବ୍ଦ ଭୁଲ ହେଉଛି। ବର୍ଣ୍ଣବୋଧ ପଢ।

ଦୀପ୍ତି : ହଁ ଠିକ୍ କହିଛି ।

ମୁନା : ଏଇ ବାକ୍ସ ଭିତରୁ ଖୋଜି ଖୋଜି ବାହାରକଲି । ଆଛା ଅରଣା ମାନେ କ'ଣ ଅପା ?

ଦୀପ୍ତି : ପଞ୍ଚମରେ ପାଠ ପଡିବୁ - ଅରଣା ମାନେ ଜାଣିନୁ ।

ମୁନା : ଅରଣା ମାନେ ମାରଣା ତ ?

ଦୀପ୍ତି : ହଁ ହଁ ସେଇ ରକମ ।

ମୁନା : ତା' ହେଲେ ଠିକ୍ - ଅରଣା ମହିଷି ରହିଛି ଅନାଇ, ମହିଷିର ପାଖ ନଯାଅ ଦନାଇ । ଅରଣା ମଇଁଷିକୁ କ'ଣ କେହି ପାରିବେନି ଅପା ? ବନ୍ଧୁକ ନହେଲେ ବୋମା ।

ବିଭୂ : (ଚିତ୍କାର କରି) ମୁନା .........।

(ବିଭୂର ଏମିତି ବ୍ୟବହାରରେ ଦୀପ୍ତି ଓ ମୁନା ଆଶ୍ଚର୍ଯ୍ୟ ହୋଇ ଚାହିଁ ରହନ୍ତି । ମଂଚ ଅନ୍ଧାର ହେବା ସଂଗେ ସଂଗେ ଅନ୍ତରାଳରୁ 'ବୋମା' ଶବ୍ଦଟି କେବଳ ପ୍ରତିଧ୍ୱନିତ୍ ହୋଇଚାଲେ ।)



# ଦୃଶ୍ୟ - ୪

## ଅଭିନୟାଞ୍ଚଳ - ୧

*।।ସୂତ୍ରଧର- ୧ , ସୂତ୍ରଧର- ୨ ।।*

(ସୂତ୍ରଧର ଦୁଇଜଣ ରେଡ଼ିଓ ଓ ଦୂରଦର୍ଶନର ସଂପାଦ ପାଠକ ଭାବରେ ସଂପାଦ ପାଠ କରୁଛନ୍ତି।)

ସୂତ୍ର ୧ : (ରେଡ଼ିଓ ସଂବାଦ) ଆପଣମାନେ ଖବର ଶୁଣୁଛନ୍ତି ଆକାଶବାଣୀରୁ। ଆମ୍ଭର ବିଶେଷ ସଂବାଦଦାତାଙ୍କଠାରୁ ଖବର ଦେବାରେ ଜଣାଯାଇଛି ଯେ, ଆଜି ଗୃହମନ୍ତ୍ରୀ ଶ୍ରୀଯୁକ୍ତ ପରମପ୍ରିୟ ପଟ୍ଟନାୟକ ବଉଦପୁର ନିକଟରେ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଉଥିବା ସମୟରେ.....।

(ହଠାତ୍ ଯାନ୍ତ୍ରୀକ ତୃଟୀ ଯୋଗୁ ସଂବାଦ ପରିବେଷଣ ବନ୍ଦ ହୋଇ ଯାଇଛି। ପରେ ଟିଭିରେ ଖବର ଶୁଣା ଯାଉଛି।)

ସୂତ୍ର (୨) : (ଟିଭି ସଂବାଦ) ଦୂରଦର୍ଶନର ସଂବାଦ ଦାତା ଜଣାଇଛନ୍ତି ଯେ ରାଜ୍ୟର ଗୃହମନ୍ତ୍ରୀ ଶ୍ରୀଯୁକ୍ତ ପରମପ୍ରିୟ ପଟ୍ଟନାୟକ ବଉଦପୁର ନିକଟରେ ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେଉଥିଲାବେଳେ ଏକ ଅଜଣା ଆତତାୟୀ ବୋମାମାଡ଼ କରିବା ଫଳରେ ସଭାକାର୍ଯ୍ୟରେ ଗୋଳମାଳ ହୋଇଥିଲା। ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ଅଳ୍ପ ଦୂରରେ ଘଟିଥିବା ଏଇ ବୋମା ମାଡ଼ରେ ବିଶେଷ କିଛି କ୍ଷୟକ୍ଷତି ନହୋଇଥିଲେ ସୁଦ୍ଧା ନିକଟରେ ଠିଆ ହୋଇଥିବା ଶ୍ରୀଯୁକ୍ତ ଅବନୀ ସୁନ୍ଦର ଦେଶପାଣ୍ଡେ ଓ ସାଥି ବୁଡା ଓ ମଣ୍ଟୁଙ୍କ ଦେହରେ ସାମାନ୍ୟ ଆଘାତ ଲାଗିଥିଲା। ସେମାନଙ୍କୁ ପ୍ରାଥମିକ ଚିକିତ୍ସାପରେ ଛାଡ଼ି ଦିଆଯାଇଛି। ଏଇ ବୋମାକାଣ୍ଡ ପଛରେ ବିପ୍ଳବ ଗୌରବ ଗଠିତ ସନ୍ତ୍ରାସବାଦି ଗୋଷ୍ଠିର ହାତଥିଲା ଭଳି ଜଣାଯାଉଛି। ଏଇ ଏଇ ଆମର ହସ୍ତଗତ ହୋଇଥିବା ପ୍ରତ୍ୟକ୍ଷଦର୍ଶୀ.... ସଂବାଦଦାତାଙ୍କ ଗୃହିତ ଭିଡ଼ିଓ ରେକର୍ଡ଼ିଂ ଦେଖନ୍ତୁ....। (ଟିଭି ପରଦାରେ ସଂବାଦ ବଦଳରେ Sorry for Interruption ଲେଖା ଦେଖାଗଲା।)



## ଦୃଶ୍ୟ - ୫

### ଅଭିନୟାଞ୍ଚଳ - ୧

*//ବୀର, କହ୍ନେଇ, ବିଲ୍ଲୁ//*

(ପୋଲିସ୍ ଷ୍ଟେସନ। ସମୟ-ସନ୍ଧ୍ୟା, ପୋ:ଅ: ବୀର ବିକ୍ରମ ପତି ଉତ୍ତେଜିତ ଅବସ୍ଥାରେ ପଦଚାରଣା କରୁଛନ୍ତି ହାତରେ ଫାଇଲ....)

ବୀର : ବୋମା, ତା'ହେଲେ ଆତତାୟୀ ହାତବୋମା ପକାଇ ଚଂପଟ। ପୋଲିସ ଆଖିରେ ଧୂଳିଦେଇ ବିଶାଳ ଜନ ସମୁଦ୍ର ଭିତରେ ଆତ୍ମ ଗୋପନ କରିଛି। ବିପ୍ଳବ ଗୌରବ ଯେ ଆତତାୟୀ ହୋଇପାରେ ସନ୍ଦେହକରି ରାଜ୍ୟ ଗୋଇନ୍ଦା ବାହିନୀ ତା' ଫଟୋ ସବୁ ଥାନାକୁ ସାର୍କୁଲେଟ କରିଛି। ତାକୁ ଧରିଦେବାଟା ପୋଲିସ ବାହିନୀର ଇଜ୍ଜତ। କହ୍ନେଇ - କହ୍ନେଇ ଆବେ ରାସ୍କେଲ କହ୍ନେଇ।

କହ୍ନେଇ : (ପ୍ରବେଶ) ହଜୁର।

ବୀର : ଚିକଣିଆ କରି କହିଲା ହଜୁର। ଇଡ଼ିଏଟ ଗୋଟେ ଡ଼ାକରେ ହାଜର ହେବାକଥା। ପୋଲିସ ଚାକିରୀ କରି ଡ଼ିସିପ୍ଲିନ୍‌ଟା ଶିଖିପାରିଲୁନି। କନେଷ୍ଟବଲ ଚାକିରୀ ତୋତେ କିଏ ଦେଲା ?

କହ୍ନେଇ : ଚୌଧୁରୀ ସାହେବ ହଜୁର। ସେ ଏସ୍.ପି. ଥିଲାବେଳେ ତାଙ୍କଘରେ ରହି ଲଗାତର ଛ ବର୍ଷକାଳ ତାଙ୍କ ଚାରି ଚାରିଟା ଦୁଧିଆଳୀ ଜର୍ସି ଗାଈର ସେବା କରିବା ସହିତ, ତାଙ୍କ ଇଷ୍ଟ ଦେବତା ଗୁରୁଣ୍ଡି ଗୋପାଳଙ୍କ ପୂଜାପାଠ କରୁଥିଲି। ସେଇଥି ପାଇଁ ଦୟା ପରବସ ହୋଇ ଏଇ ଗରିବ ବ୍ରାହ୍ମଣଙ୍କୁ ବିନା ଛାତିମାପ, ଦୌଡ଼ାଡ଼ିଆଁ ନଦେଖି ଗୋଟେ କଲମଗାରରେ ଚାକିରୀ ଦେଇଦେଲେ ହଜୁର।

ବୀର : ସଟଅପ୍। ହେଡ୍‌କ୍ୱାଟରରୁ କ'ଣ ମେସେଜ ଆସିଛି ଜାଣିଛୁ ?

କନ୍ହେଇ : ଜାଣିଛି ହୁଜୁର ନକ୍‌ସଲ ଯୁବକ ବିପ୍ଳବ ଗୌରବ ପୋଲିସ ହାଜତରୁ ଟଂପଟ ଦେଲାପରେ ମନ୍ତ୍ରୀଙ୍କ ସଭାରେ ବୋମା ଫୁଟାଇ ବ୍ଲୁ କରିଛି। ବୋମା-ମାଡ଼ରେ ମନ୍ତ୍ରୀଙ୍କ ପାଖଲୋକ ଆମ ସହରର ବିଶିଷ୍ଟ ନେତା ଅବନୀ ସୁନ୍ଦର ଆଉ ତାଙ୍କ ଚେଲା ଚାମୁଣ୍ଡା ମାନେ କ୍ଷତବିକ୍ଷତ ହୋଇଛନ୍ତି।

ବୀର : ତେବେ ? ଏଇ ପରମ ସଢ଼ିସନ୍ଧି ମୁହୂର୍ତ୍ତରେ ଆମର କର୍ତ୍ତବ୍ୟନିଷ୍ଠା ବଢ଼ିବା ପରିବର୍ତ୍ତେ ତୁ ଥାନାରୁ କୁଆଡ଼େ ଅନ୍ତର୍ଦ୍ଧାନ ହେଇଯାଉଛୁ।

କନ୍ହେଇ : ଅନ୍ତର୍ଦ୍ଧାନ କୁଆଡ଼େ ହେଲି ହୁଜୁର। ବାବୁଆଣୀ - ମା ପରା ମୋତେ ଆପଣଙ୍କ କ୍ୱାଟରକୁ ଡ଼ାକିନେଇ - ରୋଷେଇ କାମରେ ଲଗାଇ ଦେଇଥିଲେ। ଆପଣଙ୍କ ଶଳାବାବୁ ଆସୁଛନ୍ତି ବୋଲି ବିଶେଷ ଖାନା ପିନାର ବନ୍ଦୋବସ୍ତ ଚାଲିଛି।

ବୀର : ନା', ବର୍ତ୍ତମାନ ସେ କାମଛାଡ଼ି ଆମକୁ ବିପ୍ଳବ ଗୌରବକୁ ଖୋଜି ଧରିବାକୁ ବାହାରିଯିବାକୁ ହେବ। ସନ୍ଦେହ କରାଯାଉଛି ସେ ଆମ ଇଲାକାରେ ଥିବା ଜଙ୍ଗଲରେ କେଉଁଠି ଆତ୍ମ ଗୋପନ କରିଛି।

କନ୍ହେଇ : ସେକଥା ସତ ହୁଜୁର। ତେବେ ସେଇଟା ଗୋଟେ ଡ଼େଞ୍ଜରସ୍ ଆସାମୀ। ମୁଁଠିମାରି ଜଣେ ଏସ୍.ପି. ର ଛାମୁଦାନ୍ତ ଭାଙ୍ଗି ଦେବାର ପ୍ରତ୍ୟକ୍ଷ ପ୍ରମାଣ ଥାଉ ଥାଉ ଆମେ କ'ଣ ସତରେ ତାକୁ ଧରି ପାରିବା।

ବୀର : ନା' ତାକୁ ଧରିବାଟା ଆମ ପୋଲିସ ଡ଼ିପାର୍ଟମେଣ୍ଟର ଇଜ୍ଜତ। ଆମ ଥାନା ଏରିଆର ସମସ୍ତ ସଂଦିଗ୍ଧ ସ୍ଥାନ ଖାନତଲାସକରି ତାକୁ ଖୋଜି ବାହାର କରିବାକୁ ପଡ଼ିବ।

କନ୍ହେଇ : ଠିକ୍ ଅଛି ହୁଜୁର। କୋଉ କୋଉ ଜାଗା ଖୋଜିବାକୁ ହେବ ଆପଣ ତାର ଗୋଟେ ପ୍ଲାନ ପ୍ରୋଗ୍ରାମ ତିଆରି କରନ୍ତୁ। ସଂନ୍ଧ୍ୟା ସମୟରେ ବାହାରି ପଡ଼ିବା। ଆପଣ ଚାହିଁଲେ ବିପ୍ଳବ ଗୌରବକୁ କୋଉ ରସାତଳୁ ଖୋଜି ବାହାର କରିଦେବେ।

ବୀର : ନା' ମୋର ବୀର ବିକ୍ରମ୍ ପତି।

କନ୍ହେଇ : ସଂକ୍ଷେପରେ ବି.ପତି, ବିପତ୍ତି।

ବୀର : ହଁ ବିପତ୍ତି।

କନ୍ହେଇ : ଯାହାକୁ ଧରିବେ ତାକୁ ପଡ଼ିବ ବିପତ୍ତି। ଗୋଟେ ସୁଚିନ୍ତିତ ଯୋଜନା କରି ଆଜି ବାହାରିଯିବାକୁ ପଡ଼ିବ ହଜୁର।

ବୀର : ମୋତେ ନିରୋଳାରେ ବସି ଗୋଟେ ଷ୍ଟ୍ରାଟେଜି ତିଆରିକରିବାକୁ ପଡ଼ିବ ।

କନ୍ହେଇ : ଆଜି ସନିବାର-ପବନସୂତ ହନୁମାନଙ୍କ ବାର । ତାଙ୍କୁ ସ୍ମରଣ କରି ଆପଣ ଯୋଜନା କଲେ ଆମେ ନିଶ୍ଚୟ ସଫଳ ହେବା । ମୁଁ ମାଙ୍କୁ କହିଦେଇ ଆସୁଛି ।

(କନ୍ହେଇ ଚାଲିଯାଏ । ବୀର ବିକ୍ରମ ମୁଣ୍ଡରୁ ଟୋପି ଖୋଲି ମନେ ମନେ ହନୁମାନଙ୍କୁ ସ୍ମରଣ କରନ୍ତି । ବାହାରୁ ଆସନ୍ତି ବିଭୂ । ତାଙ୍କ ମୁଣ୍ଡରେ ସାମାନ୍ୟ ଖଣ୍ଡିଆ, ସାର୍ଟ ପ୍ୟାଣ୍ଟ-ମଇଳା-ରାସ୍ତାରେ କେଉଁଠ ପଡ଼ିଗଲା ଭଳି ଲାଗୁଛି ।)

ବୀର : କିଏ ? କ'ଣ କାମ ଅଛି । ପରେ ଆସନ୍ତୁ । ବର୍ତ୍ତମାନ ମୋହାତରେ ସମୟ ନାହିଁ ।

ବିଭୂ : ତେବେ କେବଳ ମୋ ଏଫ.ଆଇ.ଆର୍.ଟା ରଖନ୍ତୁ । ମୁଁ ପରେ ଆସି କଥାବର୍ତ୍ତା କରିବି ।

ବୀର : ଆପଣଙ୍କ ନାମ ?

ବିଭୂ : ବିଭୂ ପ୍ରସାଦ ଦାସ । ଏଇ ସ୍ଥାନୀୟ କଲେଜରେ ।

ବୀର : ମାଷ୍ଟର ଅଛନ୍ତି । କାଲି ପ୍ରବୀର ବାବୁ କପିକରିଛନ୍ତି ବୋଲି ଆପଣ ପ୍ରିନ୍ସପାଲଙ୍କ ନିକଟରେ ରିପୋର୍ଟ କରିଛନ୍ତି ।

ବିଭୂ : ହଁ-ହେଲେ ଆପଣ ଏ ସବୁ ।

ବୀର : (ହସି) କେମିତି ଜାଣିଲି । ଏଇଆ ତ ? (ହସି) ଗୋଟେ ଇଣ୍ଟେଲିଜେଣ୍ଟ ପୋଲିସ ଅଫିସର ଥାନା ଭିତରେ ଥାଇ- ବାହାର ଦୂନିଆର ଟିକିନିଖି ଖବର କେମିତି ରଖିପାରିବ - ସେଇ ଟ୍ରେନିଂ ସେ ପାଇଥାଏ ମାଷ୍ଟର ବାବୁ । କୁହନ୍ତୁ ଅଭିଯୋଗଟା କ'ଣ ।

ବିଭୂ : ମୁଁ ପ୍ରବୀରର କପି ବିଷୟରେ ରିପୋର୍ଟ କରିଥିବାରୁ ସେ ମୋ ପରିବାର ପ୍ରତି ବିପଦ ସୃଷ୍ଟି କରୁଛି ।

ବୀର : ଯଥା.... ।

ବିଭୂ : ରିପୋର୍ଟ ଉଠେଇ ନ ନେଲେ ମୋ ସ୍ତ୍ରୀକୁ ଉଠେଇ ନେବ ବୋଲି ଧମକ ଦେଇଛି । ଏଇ ଦେଖନ୍ତୁ ମୁଁ ରାସ୍ତାରେ ଆସୁଥିଲାବେଳେ ଅନ୍ଧାରିଆ ଦେଖି ପେଲି ଦେଇଛି । ଏଇ ମୋର ଅବସ୍ଥା ।

ବୀର : ପ୍ରମାଣ ?

ବିଭୂ : ପ୍ରମାଣ !

ବୀର : ହଁ କ'ଣ ପ୍ରମାଣ ଦେବେ ଯେ ପ୍ରବୀର ଏସବୁ କରିଛି ।

ବିଭୂ : ତା'ମାନେ ଆମ୍ଭମାନଙ୍କର ନିରାପତ୍ତା ପାଇଁ ପୋଲିସ କିଛି କରିପାରିବନି ।

ବୀର : ପାରିବ - ସାକ୍ଷ୍ୟ ପ୍ରମାଣ ଦେଇ ସାବ୍ୟସ୍ତ କରିପାରିଲେ କିଛି କରିପାରିବ । ଅନ୍ଧାର ଭିତରେ ସେ ଆପଣଙ୍କୁ ଠେଲି ଦେଇ ଚାଲିଗଲା ଆପଣ ତାକୁ ଧରିନେଇ ପାରିଲେନି ।

ବିଭୂ : ଧରିନେଇ ପାରିବି । ତେବେ ଆପଣମାନେ କାହିଁକି ଅଛନ୍ତି ?

ବୀର : ଆମ୍ଭେମାନେ ଅଛୁ କ'ଣ ତାକୁ ଅନ୍ଧାର ଭିତରୁ ଲଣ୍ଠନ ଜଳାଇ ଧରିନେବୁ । ଆପଣଙ୍କ ଉପରେ ଚଡାଉ ହେବ । ଆପଣ ସାମାନ୍ୟତମ ପ୍ରତିବାଦ କରିବେନି । ଚିତ୍କାର କରି ଅନ୍ୟର ଦୃଷ୍ଟି ଆକର୍ଷଣ କରିବେନି । ପୋଲିସ କ'ଣ କରିବ ?

ବିଭୂ : ତା'ମାନେ ଗୋଟେ ନିରୀହ ନାଗରିକର ଧନ ଜୀବନ ନିରାପତ୍ତା ପାଇଁ ଏ ରାଷ୍ଟ୍ରରେ କୌଣସି ବ୍ୟବସ୍ଥା ନାହିଁ ।

ବୀର : ଅଛି । ଆପଣଙ୍କ କଥାରେ ପଡ଼ି ମୁଁ ତାକୁ ଆରେଷ୍ଟ କରିବି । କାଲି ସେ ବେଲରେ ଖଲାସ ହେବ । ତା'ପରେ ଆପଣଙ୍କ ନିରାପତ୍ତା । ଜାଣନ୍ତି ସେ ଅବନୀ ସୁନ୍ଦର ଦେଶପାଣ୍ଡେଙ୍କ ପୁଅ ।

ବିଭୂ : ଯାହାର ପୁଅ ହୁଅନ୍ତୁ ନା କାହିଁକି, ସେମାନେ କ'ଣ ଆଇନ ବାହାରେ ।

ବୀର : (ହସି) ମାଷ୍ଟର ବାବୁ ଆପଣ ଭାବିଛନ୍ତି କଳିଯୁଗ ଶେଷହେଇ ସତ୍ୟଯୁଗ ଆରମ୍ଭ ହେଇଗଲାଣି । ଆଉ ଦେଶରେ ଧର୍ମଦଣ୍ଡଧାରୀ ରାମଚନ୍ଦ୍ରମାନେ ଶାସନ ଆରମ୍ଭ କରିଦେଲେଣି । ଜାଣନ୍ତି ଆମ ସାଂସଦମାନଙ୍କ ମଧ୍ୟରୁ ପନ୍ଦର ପର୍‌ସେଣ୍ଟ ହେଉଛନ୍ତି ହାର୍ଡକୋର କ୍ରିମ୍‌ନାଲ୍‌ସ । ଆଚ୍ଛା ଆପଣ କ'ଣ ଚାହାନ୍ତି ? ଆପଣଙ୍କ ନିରାପତ୍ତା ନା ଦୋଷିକୁ ଦଣ୍ଡ ।

ବିଭୂ : ଦି'ଟା ଯାକ.... ।

ବୀର : ଦି'ଟା ଯାକ । ହାଃ ହାଃ ହାଃ । ଏତେ ସପନକୁ ରାତି କାହିଁ ମାଷ୍ଟର ବାବୁ । ଏଇ ଇଲେକ୍‌ଟ୍ରୋନିକ୍ସ ଯୁଗରେ ଫ୍ଳୋରୋସେଣ୍ଟ ଲାଇଟ ଜଳାଇ ରାତିକୁ ତ ଦିନକରି ଦିଆଯାଇଛି । ଆଚ୍ଛା.... ଆପଣଙ୍କର ପ୍ରଥମେ କ'ଣ ଦରକାର ଦଣ୍ଡ ନା ନିରାପତ୍ତା.... ?

ବିଭୂ : ନିରାପତ୍ତା ।

ବୀର : ବେଶ୍, ଯାଆନ୍ତୁ ପ୍ରିନସ୍‌ପାଲଙ୍କ ପାଖରୁ ରିପୋର୍ଟ ଫେରାଇ ଆଣନ୍ତୁ ଆଉ ନିଜର ନିରାପତ୍ତା ରକ୍ଷାକରନ୍ତୁ । ପୋଲିସ ହାତରେ କ୍ଷମତା ଥିଲେବି କ୍ଷମତା ବ୍ୟବହାର କରିବାକୁ ସ୍ୱାଧୀନତା ନାହିଁ । ଆଡ଼ିକ୍ୱେଟ୍ ଷ୍ଟାଫ୍ ନାହାଁନ୍ତି । ସାମାନ୍ୟ କଥାରେ ଭାବ ପ୍ରବଣ ହେଇ ନିଜର ସ୍ତ୍ରୀ, ପିଲାମାନଙ୍କୁ ବିପଦ ମୁହଁକୁ ଟାଣି ନିଅନ୍ତୁନି ।

ଆଉ ଯଦି ଦୋଷିକୁ ଦଣ୍ଡ ଚାହାଁନ୍ତି, ପୋଲିସ ସିଂପଲ ଆରେଷ୍ଟକରି ତାକୁ କୋର୍ଟକୁ ପଠେଇ ଦେଇ ପାରିବ । ତାପରେ ମିଛ ସାକ୍ଷୀ, ଓକିଲ - ଟଙ୍କା, ଟେଲିଫୋନ୍ ଏମିତି ଅନେକ ପାହଚ ଦେଇ, ଆସାମୀ ଆଇନ ଉପରେ ପାଦ ପକାଇ ନିର୍ଭିକ ଭାବରେ ଆପଣଙ୍କ ପାଖରେ ଠିଆ ହେଇଯିବ । You can't fight against a grate force, a grate mess. ଯାହା ଭାରତସାରା ବିଛେଦ ହେଇ ପଡ଼ିଛି । ମାଷ୍ଟର ବାବୁ ଆମେ ଚାକିରୀ କରିଛୁ । ପେଟପାଇଁ ନିଜ ଚମଡ଼ା ଚିକ୍‌କଣ ରଖିବାକୁ କେବଳ ଚଳେଇ ନେଉଛୁ । ବର୍ତ୍ତମାନ ପରିସ୍ଥିତି ଯାହା- To make compromise with every thing, ever person ନହେଲେ ବଂଚିବାଟା ଦୂରର କଥା - ସିଧାହୋଇ ବାଟ ଚାଲିବାଟା ନିରାପଦ ନୁହେଁ । ମୋ କଥା ବୋଧହୁଏ ଆପଣ ଠିକ୍ ବୁଝିପାରିଛନ୍ତି ମାଷ୍ଟର ବାବୁ ।

ବିଭୂ : ହଁ ଠିକ୍ ବୁଝିପାରିଛି । ନିରୀହମାନଙ୍କୁ ସବାର କରି ସମାଜର ତଥାକଥିତ ଗୁଣ୍ଡାମାନେ ଯେଉଁ ଶାସନ ରଥ ଚଳାଇଛନ୍ତି ସେଥିରେ ଆପଣମାନେ ହେଉଛନ୍ତି ସାରଥୀ । ରଥର ଗତି ତିବ୍ର କରିବାକୁ ଆପଣମାନେ ନିରିହମାନଙ୍କ ଉପରେ ଚାପ ପକାଇବେ ସିନା, ସେମାନଙ୍କର କିଛି କରିପାରିବେନି । Nothing

ବୀର : You ... get out - you......

(ଧକ୍‌କା ଦେଇ ବାହାର କରିଦିଏ ।)



# ଦୃଶ୍ୟ - ୬

## ଅଭିନୟାଞ୍ଚଳ - ୧

*।।ଦୀପ୍ତି, ମୁନା, ବିଭୂ, ବୁଢା,*
*ମଣ୍ଟୁ, ପ୍ରବୀର (କଣ୍ଠ)।।*

(ବିଭୂପ୍ରସାଦଙ୍କ ଘର। ସମୟ ରାତ୍ର। ମୁନା ପଢୁ ପଢୁ ଘୁମେଇ ପଡୁଛି। ଦୀପ୍ତି ଘଣ୍ଟାକୁ ଦେଖୁଛନ୍ତି ଏବଂ ବିଭୂଙ୍କ ଆସିବା ବାଟକୁ ଅପେକ୍ଷା କରିଛନ୍ତି।)

ଦୀପ୍ତି : ଦେଖ ଏସବୁ ମୋତେ କିଛି ଭଲ ଲାଗୁନି। ତୁମେ ଭୁବନେଶ୍ୱର ଯାଇ ଏଠୁ ଟ୍ରାନ୍‌ସଫର ର ବ୍ୟବସ୍ଥାକର। କାଲି ସକାଳୁ ସକାଳୁ ଯାଇ ଯାଇ ଚାନ୍ଦାଟା ଦେଇଦିଅ।

ବିଭୂ : କାହିଁକି ସେମାନେ ଆଜି ଚାନ୍ଦା ପାଇଁ ଆସିଥିଲେ ?

ଦୀପ୍ତି : ନା' ମୁଁ କ୍ଷୀର ଆଣିବା ପାଇଁ Milk Both କୁ ଯାଇଥିଲି। ଫେରିବା ବାଟରେ ଦି ତିନି ଜଣ ପିଲା ମୋତେ ଶୁଣାଇ ଶୁଣାଇ ଯାହା କହିଲେ...।

ବିଭୂ : କ'ଣ କହିଲେ ସେମାନେ ....?

ଦୀପ୍ତି : କହିଲେ - ସ୍ତ୍ରୀକୁ ତ ସ୍ୱାମୀତାର ଦାମିକା ଦାମିକା ଶାଢୀ ପିନ୍ଧିବାକୁ ଦେଉଛି। ଆମ ଚାନ୍ଦାଟା ଦେବାକୁ କାହିଁକି ମରି ଯାଉଛି।

ବିଭୂ : ତୁମେ ତାଙ୍କୁ କିଛି ଉତ୍ତର ଦେଇପାରିଲନି ।

ଦୀପ୍ତି : ମୁଁ କହିଲି ତୁମର କ'ଣ କେହି ମା ଭଉଣୀ ନାହାଁନ୍ତି । ସେଇଠୁ ଗୋଟେ ଉଠି ଆସି କହିଲା - ଅଛନ୍ତି, ହେଲେ ତୁମ ଭଳିଆ କଣେ ସ୍ତ୍ରୀ ନାହିଁ । ତା'ପରେ ସମସ୍ତେ ଖେ ଖେଁ ହୋଇ ହସି ଉଠିଲେ । (କାନ୍ଦିଛି) ସେଇଥି ପାଇଁ କହୁଛି ଆମେ ଏଇଠୁ ଚାଲିଯିବା... ।

ବିଭୂ : ହଁ ଦୀପ୍ତି ଆମକୁ ସେୟା କରିବାକୁ ପଡ଼ିବ । ଆମକୁ ସାହାଯ୍ୟ କରିବାକୁ ନା' ପୋଲିସ, ନା ଆଇନ କେହି ନାହାଁନ୍ତି । ଆମକୁ ସ୍ୱାଧୀନତା ମିଳିଛି, ଅପମାନ ଅନ୍ୟାୟ ଶୋଷଣରେ ଛଟପଟ ହୋଇ ମରିବାର ସ୍ୱାଧୀନତା । ନିଲର୍ଜଭଳି ପାଟି ନଫିଟାଇ ସବୁକିଛି ସହିଯିବାର ସ୍ୱାଧୀନତା.... । ଆମଭଳି ପରିବାରର ଦୁଃଖ ଦୁର୍ଦ୍ଦଶା ଦୂର କରିବାକୁ କେହି ନାହିଁ ।

(ଅନ୍ତରାଳରୁ ଗୋଟିଏ ମୋଟର ସାଇକେଲର ଆଲୋକରେ ଘର ଫରଚା ଦେଖାଯାଇଛି । ସେଇ ମୋଟର ସାଇକେଲର ଶବ୍ଦ ଭିତରେ ପ୍ରବୀରର ଧମକ ଶୁଣାଯାଇଛି ।)

ପ୍ରବୀର : (କଣ୍ଠସ୍ୱର) ଆବେ ଧର୍ମପୁତ୍ର ଯୁଧିଷ୍ଠିର ମହାତ୍ମାଗାନ୍ଧୀ । ଥାନାକୁ ଯାଇଥିଲୁ ମୋ ବିରୁଦ୍ଧରେ ରିପୋର୍ଟ କରିବା, କୁ ନା...' ପୋଲିସ ମୋତେ ବାନ୍ଧି ପକେଇଲା । ଦେଖପୁଅ ତୋତେ ଦୁଇ ଦୁଇଥର ଓ୍ୱାରଣିଂ ଦେଲିଣି - ତଥାପି ରିପୋର୍ଟ ଉଠେଇ ନେଲୁନି । କାଲି ପର୍ଯ୍ୟନ୍ତ ସମୟ ଦେଲି, ବାସ୍..... ।



## ଦୃଶ୍ୟ - ୭

### ଅଭିନୟାଞ୍ଚଳ - ୧

//ଦୀପ୍ତି, ବିଭୂ, ବୁଢା,
ମଣ୍ଟୁ, ସୁରେଶ//

(ବିଭୂପ୍ରସାଦଙ୍କ ସେଇଘର । ଅନ୍ୟ ଏକ ମଧ୍ୟରାତ୍ରି । କାନ୍ଥ ଘଣ୍ଟାରେ ବାରଟା ବାଜିବାର ଶବ୍ଦ । ବୁଲା.କୁକୁର ଶବ୍ଦ ଭୌତିକ ପରିବେଶ ସୃଷ୍ଟି କରୁଛି । ପଶିଆସିଛନ୍ତି ବୁଢା ଓ ମଣ୍ଟୁ । ସେମାନଙ୍କ ହାତରେ ବଡ଼ ବଡ଼ ଖଣ୍ଡା ଓ ଲୁହା ଛଡ଼ । )

ମଣ୍ଟୁ : ଯା' ଭିତର ପାଖ ଘରଟା ଦେଖି ଆସ ।

ବୁଢା : (ଭିତରକୁ ଯାଏ । ଭିତରେ କ'ଣ ଗୋଟେ ପଡ଼ିବାର ଶବ୍ଦ ଓ ମୁନାର । ) ଚିତ୍କାର । ଚୋପ୍, ପାଟି କରନି । (ମୁନାକୁ ଧରିଆଣି) - ଏଇଠି ଚୁପ୍‌ଚାପ ବସିଥା .ତୁଯାଇ ଉପରଟା ଦେଖି ଆସ । (ମଣ୍ଟୁ ଉପରକୁଯାଏ)

ମଣ୍ଟୁ : ଉପରେ ନାହିଁ । ତୁ ବୋଧେ ଠିକ୍ ଦେଖିନୁ ବୁଢା... ।

ବୁଢା : ସାମନା ଲାଇଟ୍‌ପୋଷ୍ଟ ଦେଇ ଏଇ ଘର ଅଗଣା ଭିତରକୁ ପଶିବାର ମୁଁ ଦେଖିଛି ! ହୁଏତ ପଛପାଖ ଦେଇ ଚାଲିଯାଇପରେ ।

ମଣ୍ଟୁ : ପଛପାଖ ଦେଇ ପଳାଇ ଯିବାକୁ କୌଣସି ରାସ୍ତା ନାହିଁ ।

(ହଠାତ୍ ଆଲୋକ ଆସିଛି ବିଭୂ ଓ ଦୀପ୍ତି ଆସନ୍ତି)

ବିଭୂ : ଆପଣମାନେ.... ?

ମଞ୍ଜୁ : ପାଟିକରନ୍ତୁନି । ଗୋଟେ ଚୋର ହଠାତ୍ ଏଠିକି ଆସି ଲୁଚିଯାଇଛି ।

ବିଭୂ : ଚୋର ଲୁଚିଯାଇଛି । ଜଣେ ଭଦ୍ରଲୋକ ଘରେ ରାତି ଅଧରେ ପଶି ।

ବୁଡା : ଚୋପ୍ - ଏକବାରେ ଚୋପ... । ତୁ ଚାଲ ମଞ୍ଜୁ ସେପଟ ଗଳିଟା ଦେଖିନେବା ।

ମଞ୍ଜୁ : ସାବଧାନ ରହିବେ । ଏକଥା ଯେମିତି କେହି ନଜାଣନ୍ତି ।

(ବୁଡା ମଞ୍ଜୁ ଚାଲିଗଲେ)

ଦୀପ୍ତି : ମୁନା ଯା ତୁ ଭିତରେ ଶୋଇଯିବୁ । (ମୁନା ଯାଇଛି)
ଘରେ କ'ଣ ଚୋର ପଶିଥିଲା । ନା ଏମାନେ ଚୋରୀ କରିବାକୁ.... ।

ବିଭୂ : ଭାବୁଛି ଆମର ଦୋଷ କ'ଣ । ଶାନ୍ତିର ଟିକିଏ ବଂଚିବାର ଅଧିକାର ଆମର ନାହିଁ ।

ଦୀପ୍ତି : ତୁମେ ଯାଇ ଅଗଣା କବାଟଟା ଦେଇଦିଅ ।

(ହଠାତ୍ ଅନ୍ଧାର ଭିତରୁ ଗୋଟିଏ ଛାୟାମୂର୍ତ୍ତୀ ଦେଖି ଦୀପ୍ତି ଚିତ୍କାର କରି ଉଠେ ।)

ବିଭୂ : କିଏ..... ?

(ଗୋଟିଏ ଯୁବକ ଆଗେଇ ଆସେ ମୁହଁରେ ଅସଂଜତ ଦାଡି । ହାତରେ ପିସ୍ତଲ । କାନ୍ଧରେ ବ୍ୟାଗ ।)

ଯୁବକ : ଯାଆନ୍ତୁ-ସେପଟେ ଦେଖି ଆସନ୍ତୁ ସେମାନେ ଗଲେଣି ନା ନାହିଁ । ଯାଆନ୍ତୁ.. । ଥାଉ - ମୁଁ ନିଜେ ଯାଉଛି । (ଫେରିଛି) ଲାଇଟ ଲିଭେଇ ଶୋଇ ପଡ଼ନ୍ତୁ । ସେମାନେ ଏ ଘରଟା ଦେଖି ଚାଲିଯାଇଛନ୍ତି । ରାତିଟା ଏଇଠି ରହିଯିବା ନିରାପଦ । ମ୍ୟାଡ଼ମ ମୋତେ ଗୋଟେ ଗ୍ଲାସ ପାଣି ଦେଇ ପାରିବେ ।

(ଦୀପ୍ତି ପାଣି ଆଣି ଦେଇଛି)

ଆପଣମାନେ କାହିଁକି ଠିଆ ହୋଇ ରହିଲେ । ଯାଆନ୍ତୁ । ସକାଳ ପୂର୍ବରୁ ମୁଁ ଚାଲିଯିବି ।

(ଦୀପ୍ତି-ବିଭୂ ଚାଲି ଯାଆନ୍ତି । ଆଲୋକ କମିଯାଏ । ଯୁବକ ଜଣଙ୍କ ଟର୍ଚ୍ଚ ମାରି -କିଛି ପାଉଁରୁଟି ବାହାର କରିଖାଏ । ପାଖରୁ ଦୌଡ଼ା ଦୌଡ଼ିର ଶବ୍ଦ । ଯୁବକ ଜଣଙ୍କ ହାତରେ ପିସ୍ତଲ ଧରି ଲୁଚିଯାଏ । ପୁଣି ଆଲୋକ ଆସେ, ଆସନ୍ତି ବିଭୂ ଓ ଦୀପ୍ତି ।)

ଯୁବକ : ଆପଣ ମାନେ ଏ ପର୍ଯ୍ୟନ୍ତ ଶୋଇ ନାହାଁନ୍ତି ?

ବିଭୂ : ଆପଣ କିଏ ? କାହିଁକି ଏତେ ରାତିରେ ଆମକୁ ହଇରାଣ କରୁଛନ୍ତି ।

ଯୁବକ : ବାସ ବାସ । ଦୟାକରି ପାଟି ବନ୍ଦ କରନ୍ତୁ । ଯାଇ ଶୋଇବେ ନା ଯବରଦସ୍ତ ଘରେ ବନ୍ଦ କରିବାକୁ ପଡ଼ିବ ।

(ଯୁବକ ସେମାନଙ୍କୁ ଠେଲି ଠେଲି ଭିତରକୁ ନେଇ ଯାଆନ୍ତି ।)



# ଦୃଶ୍ୟ - ୮

## ଅଭିନୟସ୍ଥଳ - ୧

*।।ଦୀପ୍ତି, ବିଭୂ, ମୁନା, ସୁରେଶ।।*

(ବିଭୂ ପ୍ରସାଦଙ୍କ ସେଇ ଘର। (ସମୟ-ସକାଳ) ଆଗେ ଆଗେ ଦୀପ୍ତି ତାଙ୍କ ପଛରେ ପୂର୍ବ ରାତିର ସେଇ ଯୁବକ ଓ ମୁନା ଆସିଛନ୍ତି। ସେ ଯୁବକଙ୍କ ନାଁ ସୁରେଶ ସିଂ)

ସୁରେଶ : ଶୁଣନ୍ତୁ, ଶୁଣନ୍ତୁ ମାଡ଼ାମ୍।

ଦୀପ୍ତି : ନା' ଆପଣ କାହିଁକି ଆମ ପଛରେ ଲାଗି ପଡ଼ିଛନ୍ତି। କ'ଣ ଉଦ୍ଦେଶ୍ୟ ଆପଣଙ୍କର।

ସୁରେଶ : ପ୍ଲିଜ୍ - ମୋ କଥା ଟିକେ ବୁଝିବାକୁ ଚେଷ୍ଟା କରନ୍ତୁ। ରାତିସୁଦ୍ଧା ପଳାଇଯିବାକୁ କହିଥିଲି କିନ୍ତୁ ସକାଳ ହେଲାପରେ ସୁଯୋଗ ପାଇଲିନି।

ଦୀପ୍ତି : ତା'ହେଲେ ଏବେ ଚାଲିଯାଉ ନାହାଁନ୍ତି ?

ସୁରେଶ : ଏବେ ସ୍ପଷ୍ଟ ଦିବା ଲୋକରେ ଯିବାଟା ମୋ ପାଇଁ ନିରାପଦ ନୁହେଁ। ମୋ ଜୀବନ ଶେଷ କରିଦେବାକ ଶାସକ ଦଳର ଗୁଣ୍ଡାମାନେ ଘୁରି ବୁଲୁଛନ୍ତି।

ଦୀପ୍ତି : ବାହାରେ କ'ଣ କରିଆସି ଏଠି ଆଶ୍ରୟ ନେବେ। ଆମେ ଆପଣଙ୍କ ଗଣ୍ଡଗୋଳ ପାଇଁ ଦଣ୍ଡ ପାଇବୁ କାହିଁକି ? ମୁଁ ହାତଯୋଡ଼ି କହୁଛି। ଦୟାକରି ଚାଲିଯାଆନ୍ତୁ।

ସୁରେଶ : କେବଳ ଆମ ନିଜ ସ୍ୱାର୍ଥ ପାଇଁ ଆମେ କିଛି କରୁନୁ ମାଡ଼ମ୍। ଆମ ଦେଶର ନିରୀହ ଜନସାଧାରଣ ମାନଙ୍କୁ ତଥାକଥିତ ଗୁଣ୍ଡାରାଜ ଶୋଷଣରୁ ଉଦ୍ଧାର କରିବାକୁ ଆମେ ଜୀବନକୁ ଉତ୍ସର୍ଗ କରିଦେଇଛୁ। ବିଶ୍ୱାସ କରନ୍ତୁ ମୁଁ ଆପଣ ମାନଙ୍କର କୌଣସି କ୍ଷତି କରିବାକୁ ସିବିନ।

ଦୀପ୍ତି : ସକାଳ ପୂର୍ବରୁ ଯିବାକୁ କହି ଗଲେନି କାହିଁକି ?

ସୁରେଶ : ଜଙ୍ଗଲ ରାସ୍ତାରେ ଦୀର୍ଘପଥ ଚାଲି ଚାଲି ହାଲିଆ ହେଇ ଯାଇଥିଲି। ତେଣୁ ଆଖିକୁ ନିଦ ଆସିଯାଇଥିଲା। ଉଠିଲା ବେଳକୁ ସକାଳ ହେଇଯାଇଛି। କେବଳ ସଂନ୍ଧ୍ୟା ପର୍ଯ୍ୟନ୍ତ ଏ ଘର ଛାତ ଉପରେ ରହିବାକୁ ଟିକେ ଦବନି ଭଉଣୀ। ସତରେ ମୁଁ ଭିଷଣ କ୍ଲାନ୍ତ।

ମୁନା : ହଁ ଅପା। ତାଙ୍କ ଗୋଡ଼ରେ କେତେବଡ଼ ଖଣ୍ଡିଆ ହୋଇଛି। ସେଥିରୁ ରକ୍ତ ବୋହି କୋଠା ସାରା ହୋଇଯାଇଛି।

(ମୁନା ସୁରେଶର ପ୍ୟାଣ୍ଟ ଧରି ଦେଖାଏ।)

ଦୀପ୍ତି : (ଚମକି) ଏସବୁ ଆପଣଙ୍କର କ'ଣ ହେଇଛି।

ସୁରେଶ : ପୋଲିସର ଗୁଳି ଯେତିକି ରକ୍ତ ନେବା କଥା ନେଇଯାଇଛି। ସେଥିରେ ଆପଣ ବ୍ୟସ୍ତ ହେବେନି। ଏଇଟା ଆମର ନିତିଦିନିଆ ଘଟଣା।

ଦୀପ୍ତି : ଏବେବି ସେଥିରୁ ରକ୍ତ ବୋହୁଛି। ତଥାପି ଆପଣ ଠିଆହୋଇ ରହିଛନ୍ତି।

ସୁରେଶ : ରକ୍ତ, ଲୁହ, ଆବେଗ, ଭାବପ୍ରବଣତାକୁ ସହ୍ୟ କରିନେବାକୁ ଆମେ ଶିକ୍ଷା ପାଇଛୁ ଭଉଣୀ। ଗୋଟେ ସୁନ୍ଦର ସୁସ୍ଥ ସମାଜର ସ୍ୱପ୍ନ ସଫଳ କରିବାର୍ ଉତ୍ସାହ ନେଇ ଆମେ ଦଳ ଭିତରକୁ ଡ଼େଇଁ ପଡ଼ିଛୁ। ତେଣୁ ଏସବୁକୁ ସହି ନେଉଛୁ।

ଦୀପ୍ତି : କିନ୍ତୁ ଆପଣ୍ କିଏ, ଆପଣଙ୍କର ଦଳର ନାଁ କ'ଣ ?

ସୁରେଶ : ନାଁ - ନା' ନା' ଭଉଣୀ। ଆମ ଦଳର କୌଣସି ନାଁ ନାହିଁ। ଆମର କୌଣସି ନାଁ ରହିବା ଉଚିତ୍ ନୁହେଁ। ଆମେ ହେଉଛୁ ଦଳିତ ନିଷ୍ପେଷିତ ଏକ ପ୍ରକାର ସଂଗଠନ। ଯନ୍ତ୍ରଣା ଜର୍ଜରିତ ନିରୀହ ଜନତାର ମିଳିତ ଦୀର୍ଘଶ୍ୱାସ ମାତ୍ର।

(ହଠାତ୍ ପେପର ବାଲା 'ପେପର' କହି ଫୋପାଡ଼ି

ଦେଇଛି।     ସୁରେଶ ଚମକି ଉପରକୁ ଗଲାବେଳକୁ ତା' ଆଘାତପ୍ରାପ୍ତ ଗୋଡ଼ଟି ବାଜିଯାଇଛି। ସେ ଯନ୍ତ୍ରଣାରେ ଚିତ୍କାର କରି ଉଠିଛି।)

ଗତ କେତେଦିନ ହେଲା ମୁଁ ଚାଲିଛି ଆଉ ଚାଲିଛି। ମୋର ଟିକିଏ ବିଶ୍ରାମ ଦରକାର। ଆପଣଙ୍କର ସିଡ଼ିଘରଟାକୁ ବନ୍ଦକରି ଗୋଟେ ତାଲାପକାଇ ଦେଇ ପାରିବେ - ସଂଧ୍ୟା ଯାଏ ଟିକେ ଶୋଇ ଯାଆନ୍ତି। ଏତିକି ସାହାଯ୍ୟ କରିପାରିବେ ଭଉଣୀ।

ଦୀପ୍ତି : ଆପଣମାନେ ଆମ ପାଇଁ ଏତେ ଯନ୍ତ୍ରଣା ସହି ଲଢେଇ କରି ଚାଲିଛନ୍ତି। ମୁଁ ଏତିକି ସାହାଯ୍ୟ କରିବିନି। ଚାଲନ୍ତୁ ପ୍ରଥମେ ସେ କ୍ଷତଟା ବ୍ୟାଣ୍ଡେଜ କରିଦେବା।

ମୁନା : ତିନିଦିନ ହେଲା କେବଳ ଖଣ୍ଡେ ପାଉଁରୁଟି ଖାଇଛନ୍ତି ଅପା। ମୋ ହାତରେ ମଗାଇ ତିନି ଗ୍ଲାସ ପାଣି ପିଇ ସାରିଲେଣି। ଚାଲନ୍ତୁ ଗାଧୋଇ ଖାଇ ବିଶ୍ରାମ ନେବେ।

ଦୀପ୍ତି : ବୟସରେ ବଡ଼ ହେବେ କି ଛୋଟ ହେବେ ଜାଣିନି। ଭଉଣୀ ବୋଲି ସଂବୋଧନ କରୁଛନ୍ତି। ଆମର ଏତିକି ଅନୁରୋଧ ରଖିବେନି ?

ସୁରେଶ : ରଖିବି, ନିଶ୍ଚୟ ରଖିବି। ଏଇଥି ପାଇଁତ ଏ ଦେଶକୁ ଆମେ ଏତେ ଭଲପାଉ ଭଉଣୀ। ଏବେବି ଏ ଦେଶର ଦୁଖୀନି ମାଆ ମାନେ ଅକ୍ଷମ ପୁଅମାନଙ୍କ ପାଇଁ ଅସ୍ଥିର ହୋଇ ଲୁହ ଗଡ଼ାନ୍ତି। ଭଉଣୀମାନେ ନିଜର ଜୀବନ ବିନିମୟରେ ଆସହାୟ ଭାଇମାନଙ୍କୁ ସାହାର୍ଯ୍ୟ କରିବାକୁ ଧାଇଁ ଆସନ୍ତି। ମୁଁ ଏତିକି ଅନୁରୋଧ ରଖି ପାରିବିନ। ନିଶ୍ଚୟ ରଖିବି। ହେଲେ ଆଜି ନୁହେଁ। ଆଜି ସମୟଟା ଆମ ଉଭୟଙ୍କ ପାଇଁ ନିରାପଦ ନୁହେଁ। ଭାଇଟାକୁ କିଛି ଖୋଇବାର ଥିଲେ ଉପରକୁ ପଠେଇ ଦିଅ। ମୁଁ ଚାଲିଲି।

(ସୁରେଶ ପାହାଚ ଦେଇ ଯାଉ ଯାଉ ପଡ଼ିଯାଆନ୍ତି। ତାଙ୍କୁ ମୁନା ଓ ଦୀପ୍ତି ସଂବାଳି ନିଅନ୍ତି।)



## ଦୃଶ୍ୟ - ୯

### ଅଭିନୟାଞ୍ଚଳ - ୧

(ଡ଼ାକ ବଙ୍ଗଳା । ସମୟ-ରାତି । କହ୍ନେଇ ହାତରେ ମଦଗ୍ଲାସ ।ସେ ନିଶାଗ୍ରସ୍ତ ହୋଇଥିଲେ ବି ତା'ର ହୋସ ଅଛି । ପାଖ ଘରୁ ବୀର ବିକ୍ରମଙ୍କ ପାଟି ଶୁଣାଯାଇଛି ।)

ବୀର : କହ୍ନେଇ ।

କହ୍ନେଇ : ହଜୁର ।

ବୀର : (ଅପେକ୍ଷାକୃତ ଅଧିକ ଯୋରରେ) କହ୍ନେଇ ।

କହ୍ନେଇ : ଯାଉଛି ହଜୁର । ସଂଗେ ସଂଗେ ଯାଉଛି ।

(ମଦ ଗ୍ଲାସରେ ଥିବା ମାଲକୁ ତର ତରରେ ଶେଷ କରି ଯାଉଯାଉ ଦେଖିଛି ବୋତଲରେ କିଛି ରହିଯାଇଛି । ଫେରି ଆସି ତାକୁ ଶେଷ କଲା ବେଳକୁ ବୀର ବିକ୍ରମ ଆସନ୍ତି ।)

ବୀର : ଇଡିଏଟ୍ । ମୁଁ ତୋତେ ଡାକପକାଉଛି । ତୁ ଏଠି ବୋତଲ ପରେ ବୋତଲ ଶେଷ କରିଚାଲିଛୁ । ଏଇ ଡାକବଙ୍ଗଳାକୁ ଆମକୁ କାହିଁକି ଡକାଯାଇଛି ଜାଣିଛୁ ?

କହ୍ନେଇ : ଜାଣିଛି ହଜୁର । ଗଲା ଇଲେକ୍ସନ ସମୟରେ ଆମ ଅବନୀ ବାବୁ, ବୁଡା ବାବୁ, ମଣ୍ଟୁ ବାବୁ ମିଶି ସୁରେଶ ସିଂ ଭଉଣୀକୁ ରେପ କରି

ଦେଇଥିଲେ। ସେଥିପାଇଁ ତଳକୋର୍ଟ ତାଙ୍କୁ ଦଶ ଦଶ ବର୍ଷ ଜେଲ୍ ଦଣ୍ଡ ଦେଇଥିଲା। ଏବେ ହାଇକୋର୍ଟ ତାଙ୍କୁ ସେ ଦଣ୍ଡରୁ ନିର୍ଦ୍ଦୋଷରେ ଖଲାସ କରିଦେଇଛି। ସେ ଏଥର ଆରାମରେ MLA ପ୍ରାର୍ଥୀ ଟିକଟ ପାଇଯିବେ। ସେଇ ଖୁସିରେ ସେ ଏଠି ଗୋଟେ ପାର୍ଟି ଦେବାକୁ ଡ଼କାଇଛନ୍ତି।

ବୀର : ଏତେ କଥା ଜାଣିନ୍ତୁ ତଥାପି ପି' ଚାଲିଛୁ। ତୋତେ ସେ ମାତାଲ ଅବସ୍ଥାରେ ଦେଖିଲେ କ'ଣ ଭାବିବେ। ସେ କଥା ବୁଝିପାରୁନୁ ରାସ୍କେଲ୍?

କହ୍ନେଇ : ଆପଣଙ୍କ ସହିତ ମୋତେ ତୁଳନା କରିବେନି ହଜୁର। ଯେତେ ମଦ ପିଇଲେ ମଧ୍ୟ ମୁଁ ମତାଲ ହବା ଆପଣ କେବେ ଦେଖିଛନ୍ତି ? ମଦ ପିଇବାଟା ଆମର ଖାନ୍‌ଦାନି ଅଭ୍ୟାସ। ମଣିଷ ନିଜେ ନ ଚାହିଁଲେ ମଦ ତାକୁ କେବେ ମାତାଲ କରିପାରିବନି ହଜୁର।

ବୀର : ବେଶୀ ପିଆପିଇ କଲେ ତୁ ମାତାଲ ହେଇ ଝୁଲିବୁନି ରାସ୍କେଲ୍।

କହ୍ନେଇ : କେବେ ନୁହେଁ ହଜୁର। ନିଶାଟା କେବେ ମଦରେ ନଥାଏ, ମଦୁଆ ପାଖରେ ଥାଏ। ମଦରେ ଯଦି ନିଶା ଥାଆନ୍ତା ତେବେ ବୋତଲ ଗୁଡ଼ା ଦିନ ରାତି ଝୁଲୁନଥାନ୍ତା ହଜୁର।

ବୀର : ସଟ୍‌ଅପ୍। ମୋ ଆଗରେ ଡ଼ାଇଲଗ ମାରୁଛୁ। ତୋ ଭଳିଆ ଷ୍ଟାଫ୍‌କୁ ନେଇ ମୁଁ ବଦନାମ ହେଉଛି। ବିପ୍ଳବ ଗୌରବକୁ ଆମେ ଧରିପାରୁନେ ବୋଲି SP ମୋତେ ସସ୍ପେଣ୍ଡ କରିବାକୁ ଧମକ ଦେଉଛି। କ'ଣ କରିବି ବୁଦ୍ଧିବାଟ ଦିଶୁନି।

କହ୍ନେଇ : କୁକୁର କାହିଁକି ଲାଂଜ ହଲାଏ ଜାଣନ୍ତି ହଜୁର।

ବୀର : କାହିଁକି ?

କହ୍ନେଇ : କାରଣ ଲାଂଜ ଅପେକ୍ଷା କୁକୁରର ପାବାର ଅଧିକ। ଲାଂଜର ପାବାର ଅଧିକ ହେଇଗଲେ ସେ କୁକୁରକୁ ହଲେଇ ଦେବ ହଜୁର।

ବୀର : ଅବେ ଭାଜୁଆ SPଙ୍କ ଧମକ ସହିତ କୁକୁର ଲାଂଜର ସଂପର୍କ କ'ଣ?

କହ୍ନେଇ : ସଂପର୍କଟା କ'ଣ ବୁଝାଇ ଦେଉଛି। SP କୁକୁରହେଲେ ଆମେ ହେଉଛେ

ଲାଂଜ । ତାଙ୍କ ପାଓ୍ଵାର ବେଶୀ ବୋଲି ସେ ଆମକୁ ସପପେଣ୍ଡ କରିବାକୁ କହି ହଲେଇ ଦେଉଛନ୍ତି । ଆପଣ ଅବନୀ ବାବୁଙ୍କୁ କହି SPଙ୍କୁ ଏଇଠୁ ଟ୍ରାନ୍ସଫର କରି ଦିଅନ୍ତୁ । ବାସ୍ ଲାଂଜର ବଳ ବେଶୀ ହୋଇଗଲା । ସେ ବାଧ୍ୟ ହୋଇ ହଲିଯିବେ ହଜୁର ।

ବୀର : ଘାବସ୍ କହ୍ନେଇ । ତୋ ବଢିକୁ ତାରିଫ କରିବାକୁ ପଡ଼ିବ । ତୋରି କଥା ଭରିବି । ତୋ ମୁଣ୍ଡରେ ଯେତିକି ବୁଦ୍ଧି - ତୋତେ କନେଷ୍ଟବଲ ଚାକିରୀଟା ଫିଟ୍ କରୁନି ।

କହ୍ନେଇ : ଆଦୌ ନୁହେଁ ସାର୍ । ମୋ ବୁଦ୍ଧି ଅନୁସାରେ I.G. କିମ୍ବା D.I.G ଖଣ୍ଡେ ହେଇଥିଲେ ଚଳିଥାନ୍ତା । କପାଳ ଲିଖନ ହଜୁର । ଗୋଟେ Five year plan କରିବି ମାଟ୍ରିକ୍‌ଟାକୁ ଟପି ପାରିଲିନି ।

ବୀର : ମାଟ୍ରିକ୍ ଟପିନୁ ତଥାପି ତୋ ତୁଣ୍ଡରୁ ଏତେ ସୁନ୍ଦର ସୁନ୍ଦର କଥା ଗୁଡ଼ିକ କେମିତି ବାହାରି ପାରୁଛି ?

କହ୍ନେଇ : ପିଲାଦିନେ ଅନେକ ନାଟକ ଫାଙ୍ଗଙ୍ଗଙ୍ଗଟକରେ ମିଶି ଡ଼ାଇଲଗ ଗୁଡ଼ା ମୁଖସ୍ତ କରିବାକୁ ପଡ଼ିଥିଲା ହଜୁର । ପୋଲିସ ଚାକିରୀରେ ରହି ସେ ଗୁଡ଼ାକ କିଛି କାମକୁ ନଲାଗି ତଳିପେଟରେ କଳଙ୍କି ଲାଗି ପଡ଼ିରହିଛି । ଆପଣମାନଙ୍କ ଦୟାରୁ ଏଇ ଗଙ୍ଗାଜଳ ମୁନ୍ଦେ ମୁନ୍ଦେ ପଡ଼ିଯିବାରୁ ସେଥିରୁ ଗୋଟେ ଗୋଟେ ଗଜାହୋଇ ପଦାକୁ ବାହାରି ପଡୁଛି ସାର୍ ।

(ବାହାରେ ଜିପ୍ ର ହର୍ଣ୍ଣ ଶୁଣାଯାଏ)

ବୀର : ଅବନୀ ବାବୁ ଆସିଗଲେ ନା' କ'ଣ । ଏ ବୋତଲ ଫୋତଲ ନେଇ ସେଇ ପଟେ ରଖିଦେ ।

(କହ୍ନେଇ ବୋତଲ ନେଇ ରଖିଦିଏ । ପ୍ରବେଶ କରନ୍ତି ଅବନୀ, ବୁଡା, ମଣ୍ଟୁ, ବୀର ଓ କହ୍ନେଇ ସାଲ୍ୟୁଟ ମାରନ୍ତି ।)

ଅବନୀ : ଠିକ୍ ଅଛି । ଆପନମାନେ ଆସିଯାଇଛି କାମଟା ବତାଇଦେବା । ଆଛା - (କହ୍ନେଇକୁ) ସେପଟକୁ ଟିକେ ଯିବ ।

(କହ୍ନେଇ ଚାଲିଗଲା)

ଶୁଣିଲି। ସୁରେଶ ସିଂ ଧରିବାକୁ ଆପନଙ୍କର ଡ଼ିପାର୍ଟମେଣ୍ଟ ଖୋଜ୍ ଖବର୍ ଲଗାଇ ଦେଇଛି।

ବୀର : ସୁରେଶ ସିଂ ନୁହେଁ ସାର୍, ବିପ୍ଲବ ଗୌରବକୁ ଧରିବାକୁ ସବୁ ଥାନାକୁ ନିର୍ଦ୍ଦେଶ ଦିଆଯାଇଛି।

ଅବନୀ : ବିପ୍‌ଲବ ଗୌରବ, ବିପ୍‌ଲବ ଗୌରବ, ଆପନାର ପୋଲିସ୍ ଡ଼ିପାର୍ଟମେଣ୍ଟ ସାରା ଖାଲି ବିପଲବ ଗୌରବ ବିପଲବ ଗୌରବ ଘୁସି ହେଉଛି। ଆର୍ ତାକୁ ଧରିବାକୁ ଦିନ ରାତି ଜଙ୍ଗଲ ଭିତରେ ଖୋଜି ଚାଲିଛି। ଆପନ ଜନ ବୁଝିପାରୁନି - ସୁରେଶ ସିଂ ଯୋଉ ଲୋକ ଅଛି ବିପ୍ଲବ ଗୌରବ ସେଇ ଲୋକ ଅଛି।

ବୀର : ମାନେ - ଯୋଉ ସୁରେଶ ସିଂ ଭଉଣୀକୁ ରେପ୍ କରାଯାଇଥିଲା - ଏଇଟା ସେଇ ଲୋକ ? ବିପ୍ଲବ ଗୌରବକୁ ନାଁ ବଦଳାଇ ଦେଇଛି ? ନା' ମୋର୍ କାହିଁକି ବିଶ୍ୱାସ ହେଉନି।

ଅବନୀ : ବିଶ୍ୱା ହଉନି। ଏଇଟା ଆପନାରେ ଦୋଷ ନୁହେଁ ବୀର୍ ବିକ୍ରମ ବାବୁ, ଓଇଟା ଆପନାର ପୋଲିସ ଡ଼ିପାଟମେଣ୍ଟର ଦୋଷ। ସରକାର ପୋଲିସକୁ ସବୁ ଦେଇଛି। ଓ୍ୱାରଲେସ ଦେଇଛି - ଗାଡ଼ି ଦେଇଛି, ବନ୍ଧୁକ ଦେଇଛି, ପାଓ୍ୱାର ଦେଇଛି, ପରନ୍ତୁ ମଥାରେ ଦିମାକ ଦେଇନି। ପୋଲିସ୍ ନିଜର୍ ଦିମାକ ଉପରେ ବିଶ୍ୱାସ କରୁନି, ଲେକିନ୍ କୁତାର୍ ଦିମାକ ଉପରେ ବିଶ୍ୱାସ କାରୁଛି। କୁତା ଯୁଆଡ଼େ ଯାଉଛି ପୋଲିସ୍ ସିଆଡ଼େ ଯାଉଛି। କୁତା ଯାହା ବତାଉଛି ପୋଲିସ୍ ତାକୁଇ କରୁଛି। ଇସିଲିଏ ସବୁଥିରେ ଫେଲ ହେଇ ଯାଉଛି। ଆପନ ଜାନିନି ସୁରେଶ ସିଂ ବଦଲା ନେବା ପାଇଁ ମୁହଁରେ ଦାଡି ବଡାଇ ନାଁକୁ ବଦଳାଇ ଦେଇଛି। ତା'ର ଟାର୍‌ଗେଟ୍ ଭିତରେ ବୁଡା, ମଣ୍ଟୁ ମୋ ଛଡ଼ା ଆପଣଙ୍କୁ ବି ରଖିଛି।

ବୀର : ମୋତେ ତା ଟାର୍‌ଗେଟ୍ ଭିତରେ କାହିଁକି ରଖିବ ?

ଅବନୀ : ରାଖିବନି - ଆମକୁ ରେପ୍‌କେସ୍‌ରେ ପକାଇଲାପରେ ଆପନ ସେ କେସ୍‌ର ତ୍ରଦନ୍ତ କେରିଥିଲା। ଆପନଙ୍କ ରିପୋର୍ଟ ଉପରେ କୋର୍ଟ ଆମକୁ ବାଇଜତ Free କରିଦେଲା।

ବୁଢା : ସେଇଥି ପାଇଁ ତା ରାଗ ବଢିଯାଇଛି । ଆମ ମାନଙ୍କୁ ଶେଷ କରିଦେବାକୁ ସେ ଦିନରାତି ଲାଗିପଡ଼ିଛି ।

ମଣ୍ଟୁ : କାଲି ରାତିରେ ସୁରେଶ ସିଂ ଭଳି ଗୋଟେ ଟୋକାକୁ ଆମ ସାହି ଭିତରେ ଦେଖୁଛୁ । ଆମକୁ ଦେଖି ସେ ଲୁଚି ଯିବାରୁ ଆମ ସନ୍ଦେହ ବଢିଯାଇଛି ।

ଅବନୀ : ଆଉ ତା' ହାତରେ କ'ଣ ଅଛି ଆପନ ଜାଣିଛି । ଶାଲା - ଏ.କେ.47 ଧରି ବୁଲୁଛି । ଫିର୍ କଲକତାରୁ ବମ୍ ତଯ୍ୟରି ଶିଖି ଆସିଛି ।

ବୀର : ତା' ହେଲେ କ'ଣ କରିବାକୁ ପଡ଼ିବ ।

ଅବନୀ : କୁଛ ନେହିଁ । ସିର୍‌ଫି ଆପନ୍ ଆମକୁ help କରିବ । ମୁଁ ଲୋକ ସେଟ୍ କରିଦେଇଛି । ସେମାନେ ତାକୁ ସଦାକେଲିଏ ହଟାଇ ଦେବ । ଚାରିଆଡ଼େ ପରଚାର ହେବ ପୋଲିସ ଗୁଳିରେ ସେ ମରିଯାଇଛି । ସମଝ୍ ଗୟା ନା... ।

(ଅବନୀ ସୁନ୍ଦର ହସି ଉଠନ୍ତି । ତା' ସହିତ ବୁଢା ଓ ମଣ୍ଟୁ । ବୀର ବୀକ୍ରମ ଭକୁଆ ହୋଇ ଚାହିଁ ରୁହନ୍ତି ।)



## ଦୃଶ୍ୟ - ୧୦

### ଅଭିନୟାଞ୍ଚଳ - ୧

*।।ଦୀପ୍ତି, ବିଭୂ, ମୁନା, ସୁରେଶ*
*ସୁତ୍ରଧର ୧ ଓ ୨, ଦଣ୍ଡପାଣି, ବୁଢା, ମଞ୍ଜୁ।।*

(ବିଭୂ ପ୍ରସାଦଙ୍କ ସେଇ ଘର। (ସମୟ- ଅପରାହ୍ନ) ଦୀପ୍ତି ହାତରେ ଲେକଷ୍ଟ୍ରୋଧରି ବୁଣୁଛନ୍ତି। ବାହାରୁ ଆସନ୍ତି ବିଭୂ ପ୍ରସାଦ)

ଦୀପ୍ତି : ତୁମେ ଆଜି ଏତେ ଜଲଦି କେମିତି ?

ବିଭୂ : କାମଥିଲା। ପ୍ରିନ୍‌ସପାଲ୍‌ଙ୍କୁ କହି ଚାଲି ଆସିଲି।

ଦୀପ୍ତି : ସେ ରିପୋର୍ଟ ଫେରାଇ ଦେବାକୁ କହୁଥିଲ, ଫେରାଇଦେଲ।

ବିଭୂ : ହୁଁ।

ଦୀପ୍ତି : ଲାଲ ଚଉକ ପୂଜା କମିଟି ଅଫିସ୍‌କୁ ଯିବାକୁ କହିଥିଲି।

ବିଭୂ : ସେଇଠୁ ଫେରୁଛି।

ଦୀପ୍ତି : ଟଙ୍କାଟା ଦେଇଦେଲ ନା ?

ବିଭୂ : ଛ ମାସର ଟଙ୍କାମାନେ ତିନି ହଜାର ଛ'ଶହରୁ ଗୋଟେ ଟଙ୍କା କମ୍ ହେଲେ ସେ ରଖିପାରିବେନି ବୋଲି ମନା କଲେ।

ଦୀପ୍ତି : ତାଙ୍କୁ କହିଲନି ଆମର ଅସୁବିଧା ଅଛି ଆସ୍ତେ ଆସ୍ତେ ଦେଇଦେବୁ।

ବିଭୂ : ସେମାନେ କିଛି ଶୁଣିବାକୁ ପ୍ରସ୍ତୁତ ନୁହନ୍ତି ବରଂ କାଲି ସୁଧା ଟଙ୍କା ନଦେଲେ ଏ ଘର ଛାଡ଼ିବାକୁ ପଡ଼ିବ।

ଦୀପ୍ତି : ହେ ଭଗବାନ....।

ମୁନା : (ଉପରୁ ଆସୁ ଆସୁ) ତୁମେ ଥାଅ ସୁରେଶ ଭାଇ। ଭାଇ ଆସିଲେଣି ମୁଁ ଯାଉଛି।

ବିଭୂ : ମୁନା ଉପରେ କାହା ସହିତ କଥା ହେଉଛି।

ଦୀପ୍ତି : କାଲି ରାତିର ସେ ବାବୁ ଯାଇ ନାହାଁନ୍ତି। ବିଚରା ଗୋଡ଼ରେ ଗୁଳି ବାଜି ରକ୍ତ ବୋହୁଥିଲା। ସଂନ୍ଧ୍ୟାଯାଏ ରହିବାକୁ ବଡ଼ କାକୁତି ମିନତି କରି କହିବାରୁ।

ବିଭୂ : ତୁମ ସ୍ତ୍ରୀ ଲୋକ ଗୁଡ଼ାକ ବଡ଼ ଭାବ ପ୍ରବଣ। ଆମ ଦୁଃଖରେ ଆମେ ମଲା ବେଳକୁ - ତୁମେ ପୁଣି ଗୋଟେ ବିପଦ ଭିତରକୁ ଟାଣି ନେଉଛ।

(ମୁନା ପଛେ ପଛେ ଯୁବକ ଆସେ)

ସୁରେଶ : ସାନଭାଇ କେବେ ବଡ଼ଭାଇ ମାନଙ୍କୁ ବିପଦ ଭିତରକୁ ଟାଣି ନିଏନି ବଡ଼ ଭାଇ। ଆପଣ ମିଛରେ ଆତଙ୍କିତ ହୁଅନ୍ତୁନି।

ବିଭୂ : ବଡ଼ଭାଇ, ଏ ସବୁ ସଂବୋଧନ ବନ୍ଦ କରନ୍ତୁ।

ସୁରେଶ : (ହସି) ଆପଣ ଫାଇନାଲ ଇୟରରେ ପଢ଼ିଲା ବେଳେ ଆପଣଙ୍କ ରୁମରେ ଥିବା ସାନଭାଇ ସୁରେଶ ସିଂ କଥା ଏତେ ଚଂଚଳ ଭୁଲିଗଲେ ବଡ଼ଭାଇ।

ବିଭୂ : ସୁରେଶ ସିଂ ?

ସୁରେଶ : କଲେଜ ଇଲେକ୍ସନ ବେଳେ ଯିଏ ରାତି ରାତି ଅନିଦ୍ରା ହୋଇ ଆପଣଙ୍କ ପାଇଁ ପୋଷ୍ଟର ତିଆରି କରୁଥିଲା।

ବିଭୂ : ତୁମେ କଲେଜ କ୍ୟାମ୍ପସର ସେଇ ତରୁଣ କବି ସୁରେଶ ସିଂ। କବିତା ଲେଖା ଛାଡ଼ି ହାତରେ ଆଗ୍ନେୟଅସ୍ତ୍ର ଧରି ବୁଲୁଛ ?

ସୁରେଶ : ଆମ ଦେଶର ଅର୍ଦ୍ଧ ସମାଜ ବାଦୀ ଅର୍ଦ୍ଧ ପୁଞ୍ଜିବାଦୀ ଶାସନ ବ୍ୟବସ୍ଥା ଆମ ହାତରେ ଆଗ୍ନେୟଅସ୍ତ୍ର ଧରାଇ ଦେଇଛି ଭାଇ - ଆମେ ଆପେ ଆପେ ଯ୍ୟକୁ ଧରି ନେଇନୁ। ଦିନ ନାହିଁ ରାତି ନାହିଁ ଜୀବନର ସମସ୍ତ ସୁଖ ଶାନ୍ତିକୁ ବଳିଦେଇ ଗୋଟେ ସଙ୍କଳ୍ପକୁ କାର୍ଯ୍ୟକରିବାକୁ କାମକରି ଚାଲିଛୁ।

ବିଭୂ : ତୁମ ସଙ୍କଳ୍ପଟା କ'ଣ ଜାଣିପାରେକି ସୁରେଶ ?

ସୁରେଶ : ଭଗତ ସିଂ, ସୁବାଷ ବୋଷ, ମହାତ୍ମାଗାନ୍ଧୀଙ୍କ ରକ୍ତରେ ଅଣାଯାଇଥିବା ସ୍ୱାଧୀନତା ଆଜି ବିପନ୍ନ ହେଇଛି। ମିଷ୍ଟରେ ଗ୍ୟାଣ୍ଡ, ସାଣ୍ଡରସ୍, ମେକର ଡ଼ାୟାର ଭଳି

ଗୋରା ସାହେବଙ୍କ ବଦଳରେ ଏ ଦେଶରେ ସୃଷ୍ଟି ହୋଇଚାଲିଛନ୍ତି ନେତା, ପୁଞ୍ଜିପତି ତଥା କଥିତ ଅମଲା ତନ୍ତ୍ରୀ ଗୋଷ୍ଠି ସେଇମାନଙ୍କ ଅନ୍ୟାୟ, ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଆମର ଲକ୍ଷ।

ବିଭୂ : ଲକ୍ଷ ତୁମର ମହାନ ହୋଇପାରେ କିନ୍ତୁ ଏତେବଡ଼ ଗୋଟେ ବିରାଟ ଫୋର୍ସ ବିରୁଦ୍ଧରେ ତୁମ ଶକ୍ତି ଯେ କେତେ ନଗଣ୍ୟ କେବେ ଭାବି ଦେଖିଛ।

ସୁରେଶ : ଏଇତ ଆମର ଦୁଃଖ। ଏଇ ଆମର କ୍ଷୋଭଯେ ଆମ ଦେଶର କୌଣସି ବ୍ୟକ୍ତି ବିଶ୍ୱାସ କରେନି ଏ ଦେଶରେ କୌଣସି ବିପ୍ଳବ ସମ୍ଭବ ହେବ। ଦେଶରେ ପ୍ରଚଳିତ ଶିକ୍ଷା ଆମକୁ କେବେ ଚିନ୍ତା କରିବାକୁ ଦିଏନି ଯେ ଚାକିରୀ, ଟଙ୍କା, ଘର, ପରିବାର ଛଡ଼ା ଆମର ଦେଶପାଇଁ କିଛି କରିବାର ଅଛି।

ବିଭୂ : ମାନେ ?

ସୁରେଶ : ଗୋଟାଏ ଜେନ୍‌ରେସନ, ଶିକ୍ଷା ଦୀକ୍ଷା, ସ୍ତ୍ରୀ ପରିବାରର ସୁଖ ଶାନ୍ତିକୁ ଜଳାଂଜଳି ଦେଇ ଅନାହାର ଅର୍ଦ୍ଧାହାର ଭିତରେ ଲଢେଇ କରି ଏ ଦେଶପାଇଁ ସ୍ୱାଧୀନତା ଆଣିଦେଲା। ଆଉ ଆଜିର ଜେନ୍‌ରେସନ୍, ନିଜ ଜୀବନକୁ ସୁରକ୍ଷିତ ରଖିବା ପାଇଁ ସେ କଷ୍ଟଲବ୍ଧ ସ୍ୱାଧୀନତାକୁ ଗୁଡ଼ାଏ ଅବିବେକି ଗୁଣ୍ଡା, କ୍ରିମ୍‌ନାଲ ମାନଙ୍କ ହାତରେ ଟେକି ଦେବାକୁ କୁଣ୍ଠାବୋଧ କରୁ ନାହାନ୍ତି। ସ୍ପଷ୍ଟ ଦିବା ଲୋକରେ ତଥାକଥିତ ସେ ଶାସକମାନେ ଜାତୀୟ ସଂପତ୍ତି ଲୁଟି ନେଉଥିଲେ ମଧ୍ୟ ଆମେ ନଦେଖିଲା ଭଳି ସହିଯାଉଛନ୍ତି। ସେଇମାନଙ୍କ ଦ୍ୱାରା ରାଜଧାନୀର ରାଜରାସ୍ତା ଉପରେ ଆମର ମା ଭଉଣୀମାନେ ଅତ୍ୟାଚାରିତ ହେଉଥିବାର ଦୃଶ୍ୟକୁ ଉପଭୋଗ କରିବାକୁ ଉଚିତ୍ ମନେକରୁଛନ୍ତି। ଆମର ଆଗାମୀ ଜେନେରେସନ୍ ଆମର ଏ ପ୍ରକାର ବ୍ୟବହାରକୁ କେବେ କ୍ଷମା କରିପାରିବ ଭାଇ ସାହେବ। ଆମର ଉତ୍ତର ପୁରୁଷମାନଙ୍କ ଆଗରେ ଆମେ ଏଇ ଆଦର୍ଶ ରଖି ଯାଉଛେ....ଛି। ଧିକ୍ ଆମର ଦେଶପ୍ରେମ ଧିକ୍....।

(ହଠାତ୍ କ'ଣ ଗୋଟେ ପଡ଼ିବାର ଶବ୍ଦ)

କିଏ ଆସୁଛି ବୋଧହୁଏ.... (ଉପରକୁ ଚାଲିଯାଏ। ଦୀପ୍ତି ବି ଯାଆନ୍ତି)

(ବିଭୂ ସୁରେଶ ସିଂ ବାଟକୁ ତାଟକା ହୋଇ ଚାହିଁରହେ । ତା କାନରେ ସୁରେଶର କଥାଗୁଡ଼ାକ ପ୍ରତିଧ୍ୱନୀତ୍ୱ ହୁଏ। ବିଭୂ ମୁଣ୍ଡକୁ ହାତରେ ଚାପିଧରି ବସିଯାଏ । ତା ମାନସପଟରେ ପୂର୍ବରୁ ଟିଭିରେ ଦେଖିଥିବା ଦାଶକାଠିଆ ନୃତ୍ୟର ଅଭିମନ୍ୟୁ ବଧ ଉପାଖ୍ୟାନଟି ଅଭିନୀତହୁଏ।)

**(ସ୍ମୃତି ଚାରଣ)**

(ସୂତ୍ରଧର ୧ ଓ ୨ ପାରଂପାରିକ ଦାଶକାଠିଆ ପୋଷାକ ପିନ୍ଧି ନୃତ୍ୟ ପରିବେଷଣ କରନ୍ତି।)

(ଗୀତ) - ହେ - ପାଣ୍ଡବଙ୍କ ଛାଉଣୀରେ ପଡ଼ିଲା ଭାଳେଣି।
କେ ଭେଦିବ ଚକ୍ରବ୍ୟୁହ କିଏ ଅଛି ଜାଣି।
ଅର୍ଜ୍ଜୁନ ଏକଇ ବୀର ପାଣ୍ଡବ ପକ୍ଷରେ
ଚକ୍ରବ୍ୟୁହ ଭେଦିବାକୁ ଏକା ସେହି ଜାଣେ।
କୃଷ୍ଣ ଆଉ ଅରଜୁନ ନାହାଁନ୍ତି ତ ଏବେ
ଯାଇଛନ୍ତି ଯୁଦ୍ଧ ପାଇଁ ରାକ୍ଷସର ସଂଗେ।
ରାମ ଯେ ନବୀନ ସୁନ୍ଦର ରାମ ଯେ।

ସୁତ୍ର(୧): ମହାଭାରତ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟ ଚକ୍ରବ୍ୟୁହ ରଚନା କରିବାକୁ ଘୋଷଣା କରିବା ପରେ - ପାଣ୍ଡବ ଶିବିରରେ ଭାଳଣି ପଡ଼ିଗଲା। କାରଣ- ଅର୍ଜ୍ଜୁନ ଛଡ଼ା ଚକ୍ରବ୍ୟୁହ ଭେଦକରିବା ଅନ୍ୟ କେହି ଜାଣି ନାହାଁନ୍ତି। ଆଉ ସେଦିନ ଅର୍ଜ୍ଜୁନଙ୍କୁ ନେଇ କୃଷ୍ଣ ଗୋଟେ ରାକ୍ଷସକୁ ବଧକରିବାକୁ ଚାଲିଯାଇଛନ୍ତି।

ସୁତ୍ର (୨): ଚକ୍ରବ୍ୟୁହ ସାମ୍ନାରେ କିଏ ପାଣ୍ଡବ ପକ୍ଷର ସେନାପତି ହେବ ଏଇକଥା ଭାବି ଯୁଧିଷ୍ଠିର ଭୀମ ନକୁଳ ସହଦେବ ଚିନ୍ତାମଗ୍ନ ହେଇଯାଇଥିବେ।

ସୁତ୍ର(୧): ହଁ। ପାଣ୍ଡବ ଶିବିର ଚିନ୍ତାମଗ୍ନ। ଏଇ ସମୟରେ ସେଠି ଚଉଦ ବର୍ଷର ବାଳକ ବୀର ଅଭିମନ୍ୟୁ ଉପସ୍ଥିତି ହୋଇ କହିଲେ -

(ଗୀତ) - ଚିନ୍ତା ତେଜ ହେ ଜ୍ୟେଷ୍ଠ ତାତ
ଯୁଦ୍ଧ ପାଇଁ ତୁମେ ହୁଅ ପ୍ରସ୍ତୁତ ।
ଚକ୍ରବ୍ୟୂହ ଭେଦ ନାହିଁତ ଅଜ୍ଞାତ
କାଲି ଯୁଦ୍ଧେ ମୋତେ କର ନାୟକ ।
କୌରବର ସେଇ ସମର ଚକ୍ର
ଭେଦିବାକୁ ମୁହିଁ ଅଟେ ସମର୍ଥ
ଜାଣିଛି ସେ ଭେଦ, ନାହିଁ ପରମାଦ
ବୀର ଫାଲ୍‌ଗୁନିର ମୁଁ ଜ୍ୟେଷ୍ଠ ପୁତ୍ର ।

ସୂତ୍ର (୧): ଅଭିମନ୍ୟୁ ପାଖରୁ ଏକଥା ଶୁଣି ଯୁଧିଷ୍ଠିର କହିଲେ ଅସମ୍ଭବ । ଅର୍ଜୁନ ଛଡ଼ା ଗୁରୁ ଦ୍ରୋଣ, ଚକ୍ରବ୍ୟୂହ ଭେଦ କଥା କାହାକୁ ଶିକ୍ଷା ଦେଇ ନାହାଁନ୍ତି । ତୁ ଜାଣିଲୁ କିପରି.... ?

ସୂତ୍ର (୨): ତୁ ମେଚଡ଼ ଟୋକାଟେ - ତୁ ଜାଣିଲୁ କେମିତି ?

ସୂତ୍ର (୧): ଏହା ଶୁଣି ଅଭିମନ୍ୟୁ କହିଲା... ।

ସୂତ୍ର (୨): କ'ଣ କହିଲା ଭାଇନା.... ।

ସୂତ୍ର (୧): (ଗୀତ) ମାତାଦିନେ ପିତାଙ୍କୁ ମୋର
ପଚାରିଲେ ଚକ୍ରବ୍ୟୂହ ବେଭାର
ପିତାତ ବୁଝାଇଛନ୍ତି ସବୁ କହି
ଥାଇ ଶୁଣି ଅଛି ମାତା ଗଉରି ।
ସୁଭଦ୍ରା ନନ୍ଦନ ମୁଁ ବୀର ସୁତ
ନାହିଁ ମୋତେ ଆଜି କିଛି ଅଜ୍ଞାତ
ଗୁରୁ ଦ୍ରୋଣାଚାର୍ଯ୍ୟେ ଭେଟିବି ସମରେ
ମନୁ ଭୟତୁମ କରହେ ଦୂର ।

ସୂତ୍ର (୧): ଅଭିମନ୍ୟୁ କଥା ଶୁଣି ଧର୍ମପୁତ୍ର ଯୁଧିଷ୍ଠିର କହିଲେ ଏହା କ'ଣ ସମ୍ଭବ ।

ସୂତ୍ର (୨): କିରେ, ତୁ ତ ମା'ଙ୍କ ଗର୍ଭରେ ଥିଲୁ । ତୋର ବୁଦ୍ଧି, ଜ୍ଞାନ, ବିବେକ କିଛି ନଥିଲା । ତୁ କେମିତି ଜାଣି ପକେଇଲୁ ।

ସୂତ୍ର (୧): ରହ। ଏସବୁ କଥା ହେଲାବେଳକୁ ପାଖରେ ସାନଭାଇ ସହଦେବ ଉପସ୍ଥିତ ଥିଲେ। ସେ ହେଉଛନ୍ତି ତ୍ରୀକାଳଦର୍ଶୀ ମହାଜ୍ଞାନୀ ପଣ୍ଡିତ। ସେ କହିଲେ - ହେ ଜ୍ୟେଷ୍ଠ ଭ୍ରାତା ଏହା ଅସମ୍ଭବ ନୁହେଁ ସମ୍ଭବ। ଶାସ୍ତ୍ର ଅନୁଶାରେ ଗର୍ଭଅବସ୍ଥାରେ ଥିଲାବେଳେ ପିତା ମାତାଙ୍କ ଚିନ୍ତାଧାରା, ଆଚରଣ, ମାନସୀକ ଅବସ୍ଥାର ପ୍ରତିଫଳନ ସନ୍ତାନ ଉପରେ ପଡ଼ିଥାଏ। ସେଥିପାଇଁ ଏ ଅବସ୍ଥାରେ ପିତା ମାତା ସତକର୍ମ ସତକାର୍ଯ୍ୟରେ ଲିପ୍ତ ରହିବାକୁ ନିର୍ଦ୍ଦେଶ ଅଛି। କାରଣ ଏ ସମୟର କାର୍ଯ୍ୟକଳାପ ଉପରେ ପ୍ରଭାବିତ ହୋଇ ଆଗାମୀ ସନ୍ତାନ ଜନ୍ମଦିଏ। ଏଇ ସମୟରେ ବାପା ମାଆ ମାନେ ଭିରୁ କାପୁରୁଷ ଭଳି ବ୍ୟବହାର କଲେ ଭବିଷ୍ୟତର ସନ୍ତାନ ମଧ୍ୟ ଭୀରୁ କା ପୁରୁଷ ହୋଇ ଜନ୍ମନେବ ଏ ସମୟରେ...।

ବିଭୂ : (ହଠାତ୍ ଚିତ୍କାର କରନ୍ତି) ନାଁ **(ସ୍ମୃତି ଚାରଣ ଶେଷ)**

(ଧାଇଁ ଆସନ୍ତି ଦୀପ୍ତି।)

ଦୀପ୍ତି : କ'ଣ ହେଲା ? ଏମିତି ଚିତ୍କାର କଲ କାହିଁକି ?

ବିଭୂ : ଏଁ, ନାଁ - କିଛି ନାହିଁ।

ଦୀପ୍ତି : କ'ଣ ହେଉଛି ତୁମର ? ସମାନା ଦରଜା ଖୋଲି ଦେଇଛ କାହିଁକି ? କିଏ ଯଦି ପସିଆସେ ସୁରେଶକୁ ଦେଖି ଦେବନି।

(ଯାଇ ଦରଜା ଦେଇ ଆସେ)

ମୁଁ କାଲି ରାତିରେ ଗୋଟେ ଖରାପ ସ୍ୱପ୍ନ ଦେଖିଛି। ସେ କଥା ଭାବିଲେ ଭୟରେ ଶିହରି ଉଠୁଛି।

ବିଭୂ : ଆମର ଅଶାନ୍ତି ଭିତରେ ଖରାପ ସ୍ୱପ୍ନ ଦେଖିବା ସ୍ୱାଭାବିକ।

ଦୀପ୍ତି : କାଲି ସ୍ୱପ୍ନ ଦେଖିଲା ପରେ ନିଦ ଭାଙ୍ଗିଗଲା। ସ୍ୱପ୍ନ କଥା ମନେ ପକେଇ ଗୁଡ଼ାଏ କାନ୍ଦିଲି। ଭଗବାନ ଆମପାଇଁ କ'ଣ ଏମିତି ଦୁଃଖ ରଖିଛନ୍ତି।

ବିଭୂ : କ'ଣ ଏମିତି ସ୍ୱପ୍ନ ଦେଖିଛ କହିଲ ?

ଦୀପ୍ତି : ସ୍ୱପ୍ନରେ ଦେଖିଲି ମୋତେ ଭିଷଣ ଯନ୍ତ୍ରଣା ହେଉଛି। ତୁମେ ମୋତେ ହସ୍‌ପିଟାଲ ନେଇ ଯାଇଛ। ସେଠି ମୁଁ ଗୋଟେ ବିକଳାଙ୍ଗ ସନ୍ତାନ ଜନ୍ମ କରିଛି। ଯାହାର ଗୋଡ଼, ହାତ, ଆଖି ସବୁ ଠିକ୍ ଅଛି, ହେଲେ ପାଟି

ନାହିଁ। ପାଟି ଉପରେ ଶକ୍ତ ଏକ ଚମଡ଼ା ଘେରି ରହିଛି। ଡ଼ାକ୍ତରମାନେ କହୁଛନ୍ତି ଅପରେସନ କରି ଗୋଟେ ପାଟି ସୃଷ୍ଟି କରିହେବ କିନ୍ତୁ ସେ ପାଟିରେ ଖାଇ ପିଇ ବଂଚି ହେବ ସିନା - କଥାବାର୍ତ୍ତା କରିପାରିବ ନାହିଁ। ଯନ୍ତ୍ରଣା ସହିବ ସିନା - ଯନ୍ତ୍ରଣାର ଶବ୍ଦ ଶୁଣାଇ ପାରିବ ନାହିଁ। ସବୁ ସହିବ ସିନା - ପ୍ରତିବାଦର ସ୍ୱର ବାହାରିପାରିବ ନାହିଁ। ସତରେ କ'ଣ ଆମପିଲାର ଅବସ୍ଥା ଏମିତିହେବ ?

ବିଭୂ : ନାଁ, ସେ ସବୁ ବିକାରଗ୍ରସ୍ତ ମନର ଭାବନା। ତୁମେ ସେଦିନ ଟିଭିରୁ ଅଭିମନ୍ୟୁ ଉପାଖ୍ୟାନ ଦେଖି ବୋଧହୁଏ ଏମିତି ସ୍ୱପ୍ନ ଦେଖିଛ। ଆମେ ଆମ ପିଲାକୁ ସେମିତି ହେବାକୁ ଦେବାନି - କେବେ ନୁହେଁ।

ଦିପ୍ତୀ : ତୁମେ ସତ କହୁଚ ତ - ଆମ ପିଲା ସେମିତି ହେବନି।

(କବାଟ ଖଡ଼ ଖଡ଼ କରିବାର ଶବ୍ଦ। ଦୀପ୍ତି ଲୁହ ପୋଛି ଯାଇ କବାଟ ଖୋଲିଛି।)

ଦଣ୍ଡପାଣି : (ପ୍ରବେଶ) ହେଇ ପ୍ରଫେସର ସାହେବ ଆପଣ ପୂଜା ଚାନ୍ଦା ନେଇ ସେ କମିଟି ଅଫିସ୍‌ରେ କ'ଣ ସବୁ କହିଛନ୍ତି ଯେ ସେମାନେ ସବୁ ଉତ୍କ୍ଷିପ୍ତ। ଆପଣଙ୍କୁ କାଲି ସୁଦ୍ଧା ଘରୁ ବାହାର କରିଦେବାକୁ ମୋତେ ବାଧ୍ୟ କରୁଛନ୍ତି।

ବିଭୂ : ଆମକୁ ଘରୁ ବାହାର କରିଦେବାକୁ ଆପଣଙ୍କୁ ବାଧ୍ୟ କରୁଛନ୍ତି ?

ଦଣ୍ଡ : ଦେଖନ୍ତୁ, ଆପଣ ସ୍ତ୍ରୀ ଅନ୍ତସତ୍ତ୍ୱା.... ଏ ସମୟରେ ....। ଆପଣଙ୍କ ପାଖରେ ଟଙ୍କା ନଥିଲେ ମୋ ପାଖରୁ ଧାର ନେଇ ତାଙ୍କୁ ଟଙ୍କା ଦେଇଦିଅନ୍ତୁ। ତାଙ୍କ ସହିତ ଗୋଟେ ସାଲିସ୍ କରି ଦିଅନ୍ତୁ। ମୁଁ ଆପଣଙ୍କୁ ହାତ ଯୋଡୁଛି।

ବିଭୂ : ନାଁ ମୁଁ କାହା ସହିତ ସାଲିସ କରିପାରିବିନି। ଆପଣଙ୍କର ଦୟା ମୋର ଦରକାର ନାହିଁ। ଆପଣ ଚାଲି ଯାଆନ୍ତୁ।

(ମଞ୍ଜୁ ଆସିଛି)

ଦଣ୍ଡ : ନାଁ ଏମିତି ଭାବପ୍ରବଣ ହୋଇ ମୋତେ ମନାକରନ୍ତୁନି। ସାମାନ୍ୟ ଟଙ୍କା କେଇଟା ପାଇଁ ନିଜ ପାରିବାରିକ ଶାନ୍ତି ହରେଇ ବସନ୍ତୁନି - ପ୍ଲିଜ୍।

ବିଭୂ : କହିଲି ପରା କାହାର ଦୟା ମୋର ଦରକାର ନାହିଁ। ଯାଆନ୍ତୁ ଆପଣ-ଯାଆନ୍ତୁ।

(ବିଭୂ ଉତେଜିତ ହୋଇ ଦଣ୍ଡପାଣିଙ୍କୁ ବାହାରକୁ ପେଲି ଦିଅନ୍ତି। ମଣ୍ଟୁ ତାଙ୍କୁ ଧରିନିଏ।)

ମଣ୍ଟୁ : ତୁମେ ଚାଲିଆସ ମଉସା। ତା'କଥା ଆମେ ବୁଝିନେଉଛୁ। ଶଳା ପନ୍ଦର ହଜାର ଟଙ୍କା ଦରମା ପାଉଛି ତିନିହଜାର ଟଙ୍କା ଦେବାକୁ ମୁଣ୍ଡ ଗଡ଼ଉଛି। ଆମକୁ କୋର୍ଟ କଚେରୀ କଥା ଶୁଣାଉଛି। ତୁମେ ଆସ। ଶଳା ଧର୍ମ୍ମପୁତ୍ରକୁ ଆମେ ଦେଖିନେଉଚୁ....।

(ମଣ୍ଟୁ ଏ ସବୁ କହିଲା ବେଳକୁ ମୁନା ଓ ସୁରେଶ ପାହାଚ ଉପରେ ଠିଆହୋଇ ଦେଖୁଛନ୍ତି। ମଣ୍ଟୁ ଓ ଦଣ୍ଡପାଣି ଯାଆନ୍ତି)

ବିଭୂ : ସୁରେଶ, ତୁମେ ମୋତେ ସାହାଯ୍ୟ କରିପାରିବ ଭାଇ। ଏଇ ଜାନୁଆର ଗୁଣ୍ଡାକୁ ଶେଷ କରିଦେବାକୁ ମୋ ହାତରେ ଗୋଟେ ବମ୍ ଦେଇପାରିବ?

ସୁରେଶ : ବମ୍ ? ବମ୍ ଏ ସବୁର ସମାଧାନ କରିପାରିବ ନାହିଁ ଭାଇ। ତୁମ ହାତରେ ଗୋଟିଏ ବମ୍ ଥିଲାବେଳେ ଶତ୍ରୁ ହାତରେ ରହିଛି ଅଧିକ ଶକ୍ତିଶାଳୀ ମାରଣାସ୍ତ୍ର। ଏଇ ଶତ୍ରୁମାନଙ୍କୁ ଦମନ କରିବାକୁ ହାତରେ ବମ ଅପେକ୍ଷା ଦରକାର ମନର ସାହସ, ଛାତିର ଦମ୍। ଏଇମାନଙ୍କୁ ସମନା କରିବାକୁ ମୁଁ ତୁମକୁ ଶିଖାଇ ଦେବି ଅଦମ୍ୟ ସାହସ ରଖିବାର କୌଶଳ। ବଜ୍ର ନିର୍ଘୋଷ ନାଦରେ ଅନ୍ୟାୟର ମୁକାବିଲା କରିବାର ମନ୍ତ୍ର।

(ବୁଡା ଆସି ସୁରେଶକୁ ଦେଖି ପଳାଇ ଯାଏ।)

ବୁଡା : (ଅନ୍ତରାଳରୁ) ମଣ୍ଟୁ, କୁଲୁ ଡ଼ାକି ଆରେ ସୁରେଶ ସିଂ ଏଇଠି ଅଛିରେ। ସେ ଶଳାଟିକୁ ଏଇ ଅଧ୍ୟାପକ ଲୁଚେଇ ରଖିଛି। ଏ ଘରଟାକୁ ଘେରିଯାଅ... ସେ ଶଳାଟିକୁ ଆଜି ଖତମ କରିଦେବା...। ଜଲଦି.....।

(ସୁରେଶ - ପକେଟରେ ହାତମାରି ଦେଖେ ତା ପିସ୍ତଲ ନାହିଁ। ସେ ଉପରକୁ ଚାଲିଯାଏ ତା ଏପଟେ

ବୁଢା, ମଣ୍ଟୁ ହାତରେ ଲୁହାଛଡ଼ ଖଣ୍ଡଧରି ପ୍ରବେଶ କରନ୍ତି। ତାଙ୍କୁ ଦୀପ୍ତି, ବିଭୂ ଅଟକାନ୍ତି।)

ବୁଢା : ଆମ ସାମନାରୁ ହଟିଯାଅ କହୁଛି। ମୋ ମୁଣ୍ଡକୁ ବେଶୀ ଗୋଳମାଳ କଲେ କ'ଣ ନା କ'ଣ କରି ବସିବି - ଛାଡ଼ କହୁଛି।

(ବିଭୂ ବାଟ ଓଗାଳନ୍ତି।)

ବିଭୂ : ନା' ଆପଣମାନଙ୍କୁ ମୁଁ ମୋ ଘରେ ପଶିବାକୁ ଦେବିନି।

ଦୀପ୍ତି : ଆମେ କାହାକୁ ଛାଡ଼ିବୁନି।

ମଣ୍ଟୁ - ଘାଇ ଭିତରେ ଗୋଟେ ଖୁନି ଆସାମୀକୁ ଆଶ୍ରୟ ଦେଇ ପାଟି କରୁଛ। ଛାଡ଼ି କହୁଛି।

(ଘାଇ ଭିତରେ କୋଳାହଳ ବଢିଚାଲିଛି। ବୁଢା, ମଣ୍ଟୁ, ଦୀପ୍ତି ଓ ବିଭୂଙ୍କୁ ଧକ୍କା ଦେଇ ପାହାଚ ଦେଇ ଉପରକୁ ସୁରେଶ ସିଂକୁ ମାରିବାକୁ ଚାଲିଯାଆନ୍ତି। ଦୀପ୍ତି ଓ ବିଭୂଙ୍କର ଚେଷ୍ଟା ବିଫଳ ହୁଏ। ମୁନା ଗୋଟେ ଠେଙ୍ଗା ଆଣି କୋଠା ଉପରକୁ ଚାଲିଯାଏ। ପ୍ରବଳ ପାଟିତୁଣ୍ଡ ଭିତରେ ପ୍ରଚଣ୍ଡ ବିସ୍ଫୋରଣର ଶବ୍ଦ ହୁଏ। ମଂଚ ସାରା ଧୂଆଁ ମୟ ହୋଇଯାଏ। ପରେ ପରେ ଏକ ନବଜାତ ଶିଶୁର କ୍ରନ୍ଦନ ଧ୍ୱନିରେ ମଂଚ କଂପି ଉଠେ। ବିଭୂ ଦୀପ୍ତିଙ୍କ ପାଖକୁ ଧାଇଁ ଯାଆନ୍ତି।)

ବିଭୂ : ଦୀପ୍ତି - ଦୀପ୍ତି - ଦେଖ ଆମର ପୁଅ ହେଇଛି।

ମୁନା : (ଉପରୁ ଆସି) ଗୋଟେ ବୋମା ପକାଇ ତା' ଧୂଆଁ ଭିତରେ ସୁରେଶ ଭାଇ ଖସି ଯାଇଛନ୍ତି ଭାଇ। ଏମାନେ ସବୁ ଖଣ୍ଡିଆ ଖାବରା ହୋଇ ଆମ କୋଠା ଆରପାଖେ ପଡ଼ି ରହିଛନ୍ତି।

(ପୁଣି ପିଲାର କ୍ରନ୍ଦନ ଧ୍ୱନି)

ବିଭୂ : ଶୁଣୁଚ ଶୁଣୁଚ ଦୀପ୍ତି। ସୁରେଶ ଏମାନଙ୍କୁ ଜବାବ୍ ଦେଇ ଚାଲିଯାଇଛି। ଆମର ଆଉ ଭୟ ନାହିଁ। ଦେଖ, ଆମ ପୁଅର କିଛି ହେଇନି। ସେ

ବିକଳାଙ୍ଗ ନୁହେଁ । ହେଇ ସେ କେମିତି ଚିତ୍କାର କରି କାନ୍ଦୁଛି । ଶୁଣି ପାରୁଛ । ସେ କାନ୍ଦ ଭିତରେ ସେ ଯେମିତି କହୁଛି "ଭୟ ନାହିଁ । ଏଇ ମାନଙ୍କୁ ମୁକାବିଲା କରିବାକୁ ମୁଁ ଆସୁଛି ତୁମର ଉତ୍ତର ପୁରୁଷ ।"

ଦୀପ୍ତି : ହଁ ମୁଁ ସ୍ପଷ୍ଟ ଶୁଣିପାରୁଛି । ସେ କହୁଛି ଅପେକ୍ଷାକର । ମୁଁ ଆସୁଛି ଏକ ପ୍ରଚଣ୍ଡ ବିସ୍ଫୋରଣ । ମୁ ଆସୁଛି.... ।

ବିଭୂ
ଦିପ୍ତୀ : ମୁଁ ଆସୁଛି ତୁମର ଉତ୍ତର ପୁରୁଷ ।

(ବିଭୂ ଓ ଦୀପ୍ତି ତାଙ୍କ ନବଜାତ ଶିଶୁଟିକୁ ଶୁନ୍ୟକୁ ଟେକି ଧରିଛନ୍ତି । ତା କ୍ରନ୍ଦନ ଧ୍ୱନି ସହିତ ସହସ୍ର ପିଲାଙ୍କ କ୍ରନ୍ଦନ ଧ୍ୱନି ମିଳିତ ହେଇଛି । ବୁଡା ଓ ମଣ୍ଟୁ ଘୁସୁରି ଘୁସୁରି ଆସି ବିଭୂ ଓ ଦୀପ୍ତିଙ୍କ ପାଦ ପାଖରେ ପଡ଼ିଯାଇଛି । ଏକ ଉଜ୍ଜ୍ୱଳ ଆଲୋକ ରେଖା ବିଭୂ, ଦୀପ୍ତି ଓ ନବଜାତ ଶିଶୁଟିକୁ ଘେରି ରହିଛନ୍ତି । ବିଭୂ ଓ ଦୀପ୍ତି ଅତ୍ୟଧିକ ଖୁସିରେ ହସିଛନ୍ତି କିନ୍ତୁ ତାଙ୍କ ଆଖିରୁ ଧାର ଧାର ଆନନ୍ଦାଶ୍ରୁ ବହିଚାଲିଛି ।)

(ମଂଚ ଧିରେ ଧିରେ ଅନ୍ଧାର ହୋଇଛି)



**କଳାପରିଷଦ ଢେଙ୍କାନାଳ ଶିଳ୍ପୀମାନଙ୍କ ଦ୍ୱାରା ଢେଙ୍କାନାଳ, ତାଳଚେର, ରାଉରକେଲା, କଟକ, ଭୁବନେଶ୍ୱର ଇତ୍ୟାଦି ସ୍ଥାନରେ ଉତ୍ତର ପୁରୁଷ ପରିବେଷଣ ସମୟରେ**

ବିଭୂ : ଶ୍ରୀ ଦିପ୍ତିକାନ୍ତ ପତି/ଅଶୋକ ଦାସ/
ବିଭୂତି ନନ୍ଦ/ପ୍ରସନ୍ନ ପାଣି

ଦଣ୍ଡପାଣି : ଶ୍ରୀ ଶଶିକାନ୍ତ ପାଣି/ଅଶୋକ ଦାସ

ସୁରେଶ : ଶ୍ରୀ କିଶୋର ରାଉତ

ଅବନୀ : ଶ୍ରୀ ସୁରେଶ ମିଶ୍ର

ବୁଢା : ଶ୍ରୀ ବୌଦ୍ଧ ସ୍ୱାଇଁ/ଗୌରୀକାନ୍ତ ପଟ୍ଟନାୟକ/ବିନୋଦ ମହାନ୍ତି

ମଞ୍ଜୁ : ଶ୍ରୀ ପ୍ରବୀର ମହାନ୍ତି/ମନୋରଂଜନ ସିଂ

ବୀର : ଶ୍ରୀ ସୁରେଶ ମହାନ୍ତି/ସତ୍ୟନାରାୟଣ ପଣ୍ଡା

କନ୍ହେଇ : ଶ୍ରୀ ଶତ୍ରୁଘ୍ନ ମାଟି

ଗୋବରା : ଶ୍ରୀ ଇନ୍ଦ୍ରମଣି ବେହେରା

ସୂତ୍ରଧର୧ : ଶ୍ରୀ ହିମାଂଶୁ ପଣ୍ଡା/ପ୍ରବୀର ମହାନ୍ତି

ସୂତ୍ରଧର୨ : ଶ୍ରୀ ଶ୍ରୀକାନ୍ତ ମିଶ୍ର

ମୁନା : ଶ୍ରୀ ମାନସ ମହାନ୍ତି/ଦୀପକ ମହାରଣା/ ପାରସ ମହାନ୍ତି

ଦୀପ୍ତି : ଶ୍ରୀମତୀ ଜାନକୀ ପଣ୍ଡା/ଶାନ୍ତି ପାତ୍ରୀ/ଶ୍ରୀ ପଦ୍ମ ସାହୁ

ସଂଗୀତ : ମଞ୍ଜୁ ଓ ପିଣ୍ଟୁ/ବ୍ରଜବନ୍ଧୁ ରଣସିଂ

ମଂଚ ପରିଚାଳନା : ଶ୍ରୀ ଜୟନ୍ତ ବର୍ମା/କଳିଙ୍ଗ ପଟ୍ଟନାୟକ

ନିର୍ଦ୍ଦେଶନା : ଶ୍ରୀ ଦିଲ୍ଲୀଶ୍ୱର ମହାରଣା

**ପଞ୍ଚପଞ୍ଚମାଳୀ ରାଜ୍ୟସ୍ତରୀୟ ନାଟ୍ୟ ଉତ୍ସବରେ ପରିବେଷଣ ବେଳେ ନାଲ୍କୋ ଅଫିସର୍ସ କ୍ଲବ ଅନୁଗୋଳର ଶିଳ୍ପୀମାନେ**

**ତା ୧୧.୦୪.୨୦୦୭**

| | | |
|---|---|---|
| ସୂତ୍ରଧର - ୧ | : | ଚିତରଂଜନ ପତି |
| ସୂତ୍ରଧର - ୨ | : | ଅମିତାଭ ପାଢି |
| ଅବନୀ ସୁନ୍ଦର | : | କେଦାର ମହାନ୍ତି |
| ବୁଢା | : | ଅରୁଣ ସାହୁ |
| ମଣ୍ଟୁ | : | କୁଞ୍ଜ ବିହାରୀ ବେହେରା |
| ବିଭୂ ପ୍ରସାଦ | : | ଅମରେନ୍ଦ୍ର ମିଶ୍ର |
| ଦଣ୍ଡପାଣି | : | ବୈକୁଣ୍ଠ ମାଣିକ |
| ବୀର ବିକ୍ରମ | : | ଦିଲିପ ସାହୁ |
| କହ୍ନେଇ | : | ନିରାକାର ନାୟକ |
| ସୁରେଶ ସିଂ | : | ଚୋଫାନ ଜେନା |
| ମୁନା (ଶିଶୁ) | : | ରିକି (ଇପିଷିତ ଅଭିଷେକ ନାୟକ) |
| ଦିପ୍ତୀ | : | ଶ୍ରୀପଦ୍ମା ସାହୁ |
| ମଂଚ ପରିଚାଳନା | : | ବିଷ୍ଣୁ ଆଚାର୍ଯ୍ୟ, ବିଜୟ ମଲିକ |
| ସଂଗୀତ | : | ସତ୍ୟ ସାହୁ |
| ପ୍ରଯୋଜନା | : | ଅନିଲ ଦଣ୍ଡଜେନା |
| ନିର୍ଦ୍ଦେଶନା | : | ଦିଲ୍ଲୀଶ୍ୱର ମହାରଣା |

# ସୁଅ

ରାଜ୍ୟସ୍ତରୀୟ ପ୍ରତିଯୋଗିତାରେ
ଶ୍ରେଷ୍ଠ ପ୍ରଯୋଜନା,
ଶ୍ରେଷ୍ଠ ଅଭିନେତ୍ରୀ , ଶ୍ରେଷ୍ଠ ହାସ୍ୟ ଅଭିନେତା , ଶ୍ରେଷ୍ଠ ସଂଗୀତ ନିର୍ଦ୍ଦେଶନା
ପାଇଁ ବହୁ ପୁରସ୍କାରପ୍ରାପ୍ତ ।

# ସୁଅ

## ଚରିତ୍ର ଲିପି

ଗୋପୀ, ପରେଶ, ମାଷ୍ଟର କାକା, ମି. ସାମନ୍ତ,
ଧନେଶ୍ୱର, ଭୋଳାନାଥ,
ମାଧବୀ

# ସୁଅ

## ପ୍ରସ୍ତାବନା ଦୃଶ୍ୟ

(ଗୋଟିଏ ସ୍ୱର ଯେମିତି ଦୂରରୁ ଭାସି ଆସୁଛି । ହୋଇପାରେକୌଣସି ଏକ ସାହାନାଇର କିମ୍ବା ବିବାହ ବେଳର ମଙ୍ଗଳବାଦ୍ୟ । ପରଦା ଖୋଲିଯାଇଛି । ମଞ୍ଚର ଗୋଟିଏ ପାଖରେ ନୀଳ ଆଲୋକର ଛୋଟିଆ ବୃତ୍ତ । ତା ଭିତରେ ଠିଆହୋଇଛି ମାଧବୀ । ଅନ୍ୟ ପାଖରେ ଗୋଟିଏ ଲାଲ୍ ରଙ୍ଗର ଆଲୋକ ବୃତ୍ତ । ତାରି ଭିତରେ ଠିଆ ହୋଇ ରହିଛ ଗୋପୀନାଥ । ଦୁଇଜଣ ପ୍ରେମିକ ପ୍ରେମିକା ଉଭୟ ବୃତ୍ତରେ ରହି ଶୂନ୍ୟରେ ପତ୍ର ଲେଖିବାର ଅଭିନୟ କରି ଚାଲିଛନ୍ତି । ଦୃଶ୍ୟଟି ମାଧ୍ୟମରେ ଉଭୟଙ୍କ ମଧ୍ୟରେ ପତ୍ରାଳାପ ଚାଲିଛି - ପରସ୍ପରର ସଂଳାପ କରିଆରେ) ।

ମାଧବୀ : ପ୍ରିୟତମ (ଶୂନ୍ୟରେ ଲେଖିବାର ଭଙ୍ଗୀ କରି ।) ଦୁଇବର୍ଷ ତଳେ ଯାହା ତୁମର ମାଙ୍କର କ୍ରିୟା କରିବା ପାଇଁ ଏହି ଗାଁକୁ ଆସିଥିଲ । ତା'ପରେ ତୁମର ଦେଖା ନାହିଁ କି କୌଣସି ଚିଠିର ଉତ୍ତର ମଧ୍ୟ ନାହିଁ । ଏଇ ଗାଁରେ ବି ତୁମର କ'ଣ ଅଛି । ଜମିବାଡ଼ି ତ ଆଗରୁ ବିକ୍ରି ହୋଇ ତୁମର ପଢ଼ା ଖର୍ଚ୍ଚରେ ଲାଗିଛି । ଯାହା ଭିଟାମାଟି ଖଣ୍ଡକ ଓ ତା ଉପରେ ଠିଆ ହୋଇ ଥିବା ସେ ଚାଳଘରଟା । ସେଇଟି ଏବେ ଭାଙ୍ଗି ଅରମା ଜଙ୍ଗଲ ହୋଇ ଗଲାଣି । ତାର ବା ମାୟା କେତେ- ଆଉ ମୁଁ ବା କାହିଁକି ମନେ ପଡ଼ିବି ।

ଗୋପୀ : (ଯେଉଁମିତି ଚିଠି ଲେଖିବା ଭଙ୍ଗିରେ) ନା ମାଧବୀ- ବିଶ୍ୱାସ କର। ସବୁବେଳେ ମନ ଛଟପଟ ହୁଏ ଗାଁକୁ ଧାଇଁଯିବି। ତୁମକୁ ଦେଖି ଆସିବି। କିନ୍ତୁ ମନ ହେଲେ ବି ଯାଇପାରେନା। ତୁମ ବାପାଙ୍କର ଜଣେ କୃତି ଛାତ୍ର ହିସାବରେ- ମୋଠୁ କେତେ ଆଶା କରିନଥିଲେ। ଅଥଚ୍ - ଖଣ୍ଡେ କିରାନୀ ଚାକିରୀ କରିବାକୁ ମୋତେ ଚାରିବର୍ଷ ଲାଗିଥିଲା ପଛେ ହେଇ ପାରିଲାନି। କେମିତି ତାଙ୍କରି ପାଖରେ ମୁହଁ ଦେଖେଇବି ?

ମାଧବୀ : ବାପାଙ୍କ ଦେହ ଭୀଷଣ ଖରାପ୍। ବୋଧହୁଏ ଆଉ ବେଶିଦିନ ବଞ୍ଚିବେନି। ଚାଲିଯିବା ପୂର୍ବରୁ ଆମର ବାହାଘରଟା ଦେଖିଯିବେ ବୋଲି ଆଶା କରିଥିଲେ।

ଗୋପୀ : ଏ ପର୍ଯ୍ୟନ୍ତ ବି କିଛି ଯୋଗାଡ଼ ହୋଇପାରିଲାନି। ଖାଲି ଟିଉସନ କରି ଯାହା ମିଳୁଛି, ସେଥିରେ ଜଣକୁ କଷ୍ଟେମଷ୍ଟେ ଚଳେଇ ନେଇ ଦିନସାରା ଏ ଅଫିସ୍ ସେ ଅଫିସ୍ ଘୁରି ବୁଲୁଛି। ଏଥିରେ ତମକୁ ବାହାହୋଇ ନର୍କକୁ ଟାଣି ଆଣିବା କ'ଣ ଠିକ୍ ହେବ ?

ମାଧବୀ : କାଲି ବାପାଙ୍କର ଦେହାନ୍ତ ହୋଇଗଲା। ଘରେ ବର୍ତ୍ତମାନ ଏକା ଏକା ଲାଗୁଛି।

ଗୋପୀ : ମୋତେ ବି ଗତକାଲି ଅଠେଇଶି ବର୍ଷ ପୂରିଗଲା। ଏଥର ସରକାରୀ ଚାକିରୀ ବନ୍ଦ। ଏଇ ଚାରିବର୍ଷ ଭିତରେ ଅନ୍ତତଃ ଚାରିଶହଟି ଇଣ୍ଟରଭିଉ ଦେଇ ଗୋଟିଏ ହେଲେ ଚାକିରୀ ପାଇପାରିଲିନି। ଆମରି କ୍ଲାସର ସବୁଠୁ ଗଧ ଥାର୍ଡ୍ ଡିଭିଜନର ଅନେକ ପିଲା ଭଲ ଭଲ ପୋଷ୍ଟରେ ଭର୍ତ୍ତି ହୋଇ ଗଲେଣି- ଅଥଚ୍ ମୁଁ ........।

ମାଧବୀ : ବର୍ତ୍ତମାନର ଗାଁ ପରିସ୍ଥିତି ଅଲଗା। ଖବର କାଗଜରେ ଆମ ଗାଁ ପାଖ ସୁବାସିନୀର କଥା ପଡିଥିବ। ବିଚାରୀର ସର୍ବସ୍ୱ ଲୁଟିନେଇ ଘରଦ୍ୱାର ପୋଡ଼ିଦେଇ ବି ସେମାନେ କୋର୍ଟରେ ଖଲାସ୍

ହୋଇଗଲେ । ମୋତେ ଭୀଷଣ ଭୟ ଲାଗୁଛି । ତୁମେ ଜଲଦି କିଛି ଗୋଟେ ବ୍ୟବସ୍ଥା କର ।

ଗୋପୀ　　ନା, ଆଉ କିଛି ଦିନ ଅପେକ୍ଷା କର । ଗୋଟିଏ କମ୍ପାନୀରେ ଯୋଗାଡ଼ ଚାଲିଛି । ଏଇମାସେ ଦୁଇମାସ ଭିତରେ ଚାକିରୀଟିଏ ମିଳିଯିବ ବୋଲି ପ୍ରତିଶ୍ରୁତି ପାଇଛି । ମିଳିଗଲା ପରେ........ ।

ମାଧବୀ　　ଦୁଇମାସରୁ ଚାରିମାସ - ଚାରିମାସରୁ ଛ ମାସ ହେଲା । ଆଉ ମୋର ଧୈର୍ଯ୍ୟ ନାହିଁ । ଗାଁ ଗୁଡ଼ାକର ଅବସ୍ଥା ଆସ୍ତେ ଆସ୍ତେ ବିଭତ୍ସ ହୋଇଯାଉଛି । ଗତକାଲି ରାତିରେ ଆମ ପଡ଼ିଶାର ଚାରୁ ବେକରେ ଦଉଡ଼ି ଲଗେଇ ଦେଲା । ପଧାନ ସାଇର ଗୋକୁଳିକୁ ପୋଲିସ୍ ବାନ୍ଧି ନେଇଛି । ମୋତେ ଦୟା କରି ନେଇଯାଅ ।

ଗୋପୀ　:　(ଶୂନ୍ୟରେ କିଛି ଚିଠି ଲେଖିଛି ଏବଂ କାଟିଛି - ପୁଣି ଲେଖିଛି ଏବଂ ଚିରି ଦେଇଛି)

ମାଧବୀ　:　କ'ଣ ହେଲା । ଚିଠିର ଉତ୍ତର ପାଉନି କାହିଁକି ? ଦୟାକରି ଧାଡ଼ିଏ ଲେଖ । ତୁମେ ସେ ସହରରେ ଅଛି ନା କୁଆଡେ ଚାଲି ଯାଇଛ ........ ?

ଗୋପୀ　:　(ପୁଣି ସେଇ ବ୍ୟର୍ଥ ଚିଠି ଲେଖା ) ।

ମାଧବୀ　:　ମହି କକାଙ୍କଠୁ ଶୁଣିଲି, ତୁମେ ସେଇଟି ଅଛ ଅଥଚ ଚିଠି ଦଉନ କାହିଁକି ? ମୁଁ କଣ ପର ହୋଇଗଲି । ମୋତେ ସଫା ସଫା ଲେଖିଦିଅ । ମୁଁ ମନଦୁଃଖ କରିବିନି । ଏଇ କେତେବର୍ଷ ଭିତରେ ମନକୁ କେମିତି ବୁଝେଇବାକୁ ହୁଏ ମୁଁ ଶିଖି ନେଇଛି...... ।



(ଅନ୍ଧାର)

## ଦୃଶ୍ୟ - ୧

### - ଗୋପୀର ଘର -

**ସମୟ - ଦିନ**

(ବାହାରୁ କଥାବାର୍ତ୍ତା ହୋଇ ଆସିଛନ୍ତି ମାଷ୍ଟର କାକା ଓରଫ୍ ମହେଶ ମାଷ୍ଟର। ବୟସ ଷାଠିଏ ଆରପାଖି । ମୁହଁରେ ଦାଢ଼ି, ପିନ୍ଧିଛନ୍ତି ଟ୍ରାଉଜର ଓ ପଂଜାବୀ । ପୋଷାକ ପରିଚ୍ଛଦ ସଫା ହେଲେ ବି ଦାରିଦ୍ର୍ୟର ସ୍ପଷ୍ଟ ଚିହ୍ନ । ହାତରେ ଗୋଟିଏ ଖବର କାଗଜ । ତାଂକ ପଛେ ପଛେ ଗୋପୀନାଥ- ବୟସ- ୨୮ ଯୁବକ-ଉଦାସୀନ- ସେ ଏଇଘରେ ଭଡ଼ାରେ ରହନ୍ତି)

ମାଷ୍ଟର : ମନକୁ କେମିତି ବୁଝେଇବାକୁ ତୁଏ ଶିଖିନେଇ ପାରିଛୁ ଭଲକଥା। କିନ୍ତୁ ମନ ବୁଝିଗଲେ ତ ପେଟ ପୂରିଯିବନି ଗୋପୀନାଥ ! ତା'ପାଇଁ ଭାତ, ରୁଟି କିଛି ନା କିଛି ଦରକାର ..... (ହୋ ହୋ ହୋଇ ହସିଉଠିଛନ୍ତି) ସେଇ ବ୍ୟବସ୍ଥା କ'ଣ କଲୁ ?

ଗୋପୀ : (ପକେଟରୁ ଗୋଟିଏ ପାଉଁରୁଟି ବାହାର କରି ଟେବୁଲରେ ରଖୁଛି) ଏ ପର୍ଯ୍ୟନ୍ତ ହୋଇପାରିଲାନି କାକା ........।

ମାଷ୍ଟର : ତୋର ସେ କଂପାନୀ ମ୍ୟାନେଜର ସାଙ୍ଗରେ ଦେଖା କରିବାର ଥିଲା ନା। କ'ଣ ହେଲା ସେ ଚାକିରୀ କଥା ?

| | | |
|---|---|---|
| ଗୋପୀ | | ତାଙ୍କର ଜୁନିୟର ଅଫିସର ଧନେଶ୍ୱର ବାବୁଙ୍କ ସଙ୍ଗେ ଦେଖା କରିଥିଲି। ଇଣ୍ଟରଭିଉରେ ଭଲ ହୋଇଛି ବୋଲି କହୁଥିଲେ। ତେବେ ଅଭିଜ୍ଞତା ଯାହା ମାଗିଛନ୍ତି ସେତକ ମୋର ନାହିଁ। ସେଇଥି ପାଇଁ ........। |
| ମାଷ୍ଟର | : | ସେଇଥି ପାଇଁ କ'ଣ କରିବାକୁ ପଡ଼ିବ ? |
| ଗୋପୀ | : | କୋଡ଼ିଏ ହଜାର ଟଙ୍କା ଦରକାର। |
| ମାଷ୍ଟର | : | ଇଣ୍ଟରଭିଉରେ ଫାଷ୍ଟହୋଇ ବି ତୁମକୁ ସେ ଟଙ୍କା ମାଗୁଛନ୍ତି। |
| ଗୋପୀ | : | ନ ଦେଇ ବାଟ ନାହିଁ କାକା। ବୟସ ସୀମା ମୋର ଶେଷ ହୋଇଯାଉଛି। ଏଇଟା ହେଉଛି ଜୀବନର ଶେଷ ଇଣ୍ଟରଭିଉ। |
| ମାଷ୍ଟର | : | କିନ୍ତୁ ଏତେ ଟଙ୍କା ତୁମେ ପାଇବ କେଉଁଠୁ ? ଟିଉସନ କରି ଯାହା ପାଉଛ - ମୋ ଘରଭଡ଼ାଟା ବି ଠିକ୍ ସମୟରେ ଦେଇପାରୁନ। |
| ଗୋପୀ | : | କ'ଣ କରିବି କିଛି ଠିକ୍ କରିପାରୁନି କାକା । |
| ମାଷ୍ଟର | : | ଗୋଟେ କାମ କରିପାରିବ ଗୋପୀନାଥ ? |
| ଗୋପୀ | : | କ'ଣ ? |
| ମାଷ୍ଟର | : | ଯୁଦ୍ଧ । |
| ଗୋପୀ | : | କାହା ସହିତ ? |
| ମାଷ୍ଟର | : | ମଣିଷ ସହିତ। ଏଇ ସ୍ୱାର୍ଥପର ସମାଜ ସହିତ ଯୁଦ୍ଧ କରି ତମ ଦାବୀକୁ ଛଡ଼ାଇ ଆଣିପାରିବ ? |
| ଗୋପୀ | | ସେ କମୁନିଜିମ୍ ଏ ଦେଶ ପାଣି ପବନରେ ଠିକ୍ କାମ କରିବନି କାକା । |
| ମାଷ୍ଟର | : | ତମ ବୁଝିବାରେ ଭୁଲ୍ ହୋଇଯାଇଛି ଗୋପୀନାଥ। ଯୋଉ ମାଟିରେ କମ୍ୟୁନିଜିମର ଜନ୍ମ, ସେଠି କାମ କରିବ ନାହିଁ ତ କରିବ ଆଉ କେଉଁଠି ? |
| ଗୋପୀ | : | ମାନେ ! |
| ମାଷ୍ଟର | : | ମହାଭାରତ କଥା ଜାଣ ? |
| ଗୋପୀ | : | ମହାଭାରତ ! |
| ମାଷ୍ଟର | : | ମନେ ଅଛି ତମର କୁରୁବଂଶ କିପରି ଧ୍ୱଂସ ହେଲା ? |
| ଗୋପୀ | : | ହଁ, ଯୁଦ୍ଧ କରି। |
| ମାଷ୍ଟର | : | କିନ୍ତୁ ଯୁଦ୍ଧ ହେଲା କାହିଁକି ? |

| | |
|---|---|
| ଗୋପୀ | ନ ହେଲେ ଉପାୟ ନ ଥିଲା । |
| ମାଷ୍ଟର | ଠିକ୍ ...... ଉପାୟ ବିହୀନ ହୋଇ ଭଗବାନ୍ ନିଜେ ଏଇ ଯୁଦ୍ଧର ଆହ୍ୱାନ ଦେଇଥିଲେ । |
| ଗୋପୀ | ସେ ବିଷୟରେ ଏତେ ଚିନ୍ତା କରନି କାକା । |
| ମାଷ୍ଟର | (ହସିଉଠି) ଓଃ ସମ୍ମୁଖ ଯୁଦ୍ଧକୁ ଡରିଯାଉଛ ତା ହେଲେ ....। ତେବେ ଚୋରି କରିପାରିବ - ଡକାୟତି କରିପାରିବ ? |
| ଗୋପୀ | ମାଷ୍ଟର କାକା .........। |
| ମାଷ୍ଟର | ମୁଁ ଜାଣେ ଗୋପୀନାଥ। ତୁମ ଭଳି ସରଳ ପିଲା କିଛି କରି ପାରିବନି- ଅଥଚ ନିଜେ ନିଜର ନିଆଁରେ ଜଳି ଝରି ପଡ଼ିବ। ସତ ନା ମିଛ ....? |
| | (ପୁଣି ହସି ଉଠିଛନ୍ତି ଏବଂ ସେଇ ହସିବା ଭିତରେ ପକେଟରୁ ବିଡ଼ିଖଣ୍ଡିଏ ବାହାର କରିଛନ୍ତି । ହଠାତ୍ ଦିଆସିଲି ପାଇଁ ହାତ ମାରିଲା ବେଳକୁ ଚିଠିଖଣ୍ଡେ ବାହାରି ଆସିଛି) |
| ମାଷ୍ଟର | ନିଅ ଗୋପୀନାଥ। ଡାକବାଲା ଦେଇଯାଇଛି। ବୋଧହୁଏ ମାଧବୀ ଦେଇଛି। |
| ଗୋପୀ | (ଚିଠି ଖୋଲିଛି ଏବଂ ମନେ ମନେ ପଢ଼ିବାକୁ ଲାଗିଛି) ହଁ ମାଧବୀ ଦେଇଛି। |
| ମାଷ୍ଟର | କ'ଣ ଲେଖିଛି ବାବା- ଏ ଦୀର୍ଘ ନିଶ୍ୱାସ କାହିଁକି ? |
| ଗୋପୀ | ଯାହା ଲେଖିଛି ସେଇଟା ସମ୍ଭବ ନୁହେଁ କାକା। ମୋର ଏଇ ଅବସ୍ଥାରେ.........। |
| ମାଷ୍ଟର | କ'ଣ ହୋଇଛି । କିଛି ଅସୁବିଧା ? |
| | (ଗୋପୀ ଚିଠିଟି ବଢ଼େଇ ଦେଇଛି) |
| ମାଷ୍ଟର | (ପଢ଼ିଛି ଏବଂ ତାହା ମାଧବୀର କଣ୍ଠ ସ୍ୱରରେ ଶୁଣାଯାଇଛି) ଅନେକ ଲେଖିବି, ତୁମେ ମୋ କଥା ବୁଝିବାକୁ, ଚେଷ୍ଟା କଲନି । ଚାକିରୀ ନ ପାଇ ହଇରାଣ ହେଉଛ ବୋଲି ବାରମ୍ବାର ଲେଖୁଛ। ତୁମର ଦୁଃଖ ସମୟରେ ଯଦି ଭାଗି |

ହୋଇ ପାରିବିନି ସୁଖ ସମୟରେ ସାଥି ହେବାର ଅଧିକାରଟି ହରାଇ ବସିବି । ତମେ ସେଠି ଏକା ଏକା ସଂଗ୍ରାମ କରିଚ଼ାଲିବ - ମୁଁ ଏଠି ଏକାକୀ ବସି ରହିପାରିବିନି । ମୋତେ ଆସି ନେଇଯା- ନ ହେଲେ ...... ।

ମାଷ୍ଟର ପିଲାଟା ଅନେକ ଅପେକ୍ଷା କଲାଣି । ତାକୁ ପାଖକୁ ନେଇଆସିଲେ ଭଲ ହବ ଭାବୁଛି ।

ଗୋପୀ ସେ କଥା ସମ୍ଭବ ନୁହେଁ କାକା । ବାହାଘର ପୂର୍ବରୁ ଆଣି ପାଖରେ ରଖିଲେ ଲୋକେ କ'ଣ କହିବେ ?

ମାଷ୍ଟର ଆଉ ଯେତେବେଳେ ବେକରେ ଦଉଡ଼ି ଦେଇ ବଉଦପୁର ଗାଁର କୋଉ ଗଛରେ ଝୁଲିପଡ଼ିବ । ସେତେବେଳେ ଲୋକଙ୍କ କଥା ସହି ପାରିବ ତ ଗୋପୀନାଥ ..... । ଶିକ୍ଷିତ ଝିଅ, ପରିସ୍ଥିତି ବୁଝୁଛି । ବରଂ ଦୁହେଁ ଏକାଠି ରହି ଦାରିଦ୍ର୍ୟ ସଙ୍ଗେ ଲଢେଇ କରିପାରିବ ।

ଗୋପୀ ନାଁ, ଆଉ ଗୋଟେ କଥା ଚ଼ିନ୍ତା କରିଛି । ଟିକିଏ ସମୟ ଲାଗିବ । ଗାଁରୁ ଘରବାଡ଼ି ଖଣ୍ଡକ ବିକ୍ରୀ କରି ଦବାକୁ ଦାଦାଙ୍କୁ ଲେଖିଛି । ଟଙ୍କା ମିଳିଗଲେ ତାକୁ ଦେଇ ଚ଼ାକିରୀ କରିବି ।

ମାଷ୍ଟର କିନ୍ତୁ ମାଧବୀକୁ ବିବାହ କରିବାକୁ ତୁମେ ପ୍ରତିଶ୍ରୁତି ଦେଇଛ । ସେ ବର୍ତ୍ତମାନ ପିତୃମାତୃ ହରା ହୋଇ ଏକାକୀ ଗାଁରେ ତୁମକୁ ଚାହିଁ ବସିଛି । ତା ପାଇଁ କିଛି ବ୍ୟବସ୍ଥା କରିବା ତୁମର ପ୍ରଥମ କର୍ତ୍ତବ୍ୟ ।

ଗୋପୀ ମୁଁ ତ ସେ କଥା କେବେ ଭୁଲିନି କାକା । ଚାକିରୀଟା ପାଇଁ ଚେଷ୍ଟା ଚଳାଇଛି । ତା ପରେ ବାହାଘର କଥା ଚିନ୍ତା କରିବି ।

ମାଷ୍ଟର Yes - ତୁମକୁ ଜୀବନ ସଂଗ୍ରାମରେ ଲଢିବାକୁ ପଡିବ ତା ସଙ୍ଗେ ସଙ୍ଗେ ସେ ସବୁ ପ୍ରତିଶ୍ରୁତିକୁ ମଧ୍ୟ ରଖିବାକୁ ହେବ My boy. The woods are dark and deep, But I have many promises to keep, Miles to go before I sleep and Miles to go before I sleep. ତୁମେ ଏଇ କଥାଟା ଯେମିତି ଭୁଲିନଯାଅ ।

(ମାଷ୍ଟର କାକା ଗୋପୀ କାନ୍ଧରେ ହାତ ରଖୀ ତା ମୁହଁକୁ ଚାହିଁ ରୁହନ୍ତି ।)



## ଦୃଶ୍ୟ - ୨

### - ଅଫିସ୍ ଅଭ୍ୟନ୍ତର -

ସମୟ - ଦିନ

(ସଙ୍ଗେ ସଙ୍ଗେ ଜୋନ୍-୨ରେ ଆଲୋକ ଜଳିଉଠିବ। ଅଫିସ୍ ଘର ବାହାରୁ କଥାବାର୍ତ୍ତା ହୋଇ ମି. ସାମନ୍ତ ଧନେଶ୍ୱର ବାବୁ ଓ ପିଅନ ଭୋଳାନାଥ ପ୍ରବେଶ କରିବେ । ଭୋଳାନାଥ ହାତରେ ଫାଇଲ୍।)

ଧନେଶ୍ୱର — ମୁଁ ଏ ବିଷୟରେ ଅନେକ ଚିନ୍ତା କରିଛି ସାର୍।

ସାମନ୍ତ — ଆପଣ ଯାହା ଚିନ୍ତା କରନ୍ତୁ ନା କାହିଁକି ହେଡ୍ ଅଫିସ୍ ଯେତେବେଳେ ଆମ ବ୍ରାଞ୍ଚର ଲସ୍ ବିଷୟରେ କୈଫିୟତ୍ ମାଗିଛି, ଆମକୁ କିଛି ହେଲେ ଏକସପ୍ଲାନେସନ ଦେବାକୁ ପଡ଼ିବ।

ଧନେଶ୍ୱର — ଧୀରେନ୍ ପାତ୍ର ଷ୍ଟୋର ସୁପରଭାଇଜର ଯୋଉ ଦେଢ଼ଲକ୍ଷ ଟଙ୍କା ମାସାପ୍ରୋପେସନ୍ କରିଛି ସେଇଟା ଆମ କ୍ଷତିର ମୁଖ୍ୟ କାରଣ। ଆମ ବ୍ରାଞ୍ଚ ଏକାଉଣ୍ଟରେ ହେଡ୍ ଅଫିସ୍ ସେଇଟା ଗଢ଼େଇ ଚାଲିଛି ସାର୍।

ସାମନ୍ତ — ଆଚ୍ଛା ସେଇ ପ୍ରକାରର ଗୋଟେ ଡ୍ରାଫ୍ଟ କରିଦିଅନ୍ତୁ। ମୁଁ ଯେତେବେଳେ କଲିକତା ଯାଉଛି, ସେଇଟା ସାଙ୍ଗରେ ନେଇଯାଇ ପାରିବି।

ଧନେଶ୍ୱର — ଠିକ୍ ସାର୍ । ସାଙ୍ଗେ ସାଙ୍ଗେ କରି ଦେଉଛି।

(ସାମନ୍ତ ତାଙ୍କ ଚେୟାରରେ ଯାଇ ବସିଲେ - କିଛି ଫାଇଲ୍ ଦେଖୁ ଦେଖୁ)

| | |
|---|---|
| ସାମନ୍ତ | ଆଚ୍ଛା ଧନେଶ୍ୱର ବାବୁ । ଶୁଣିଲି ଧୀରେନ୍‌କୁ ଆମରି କଂପାନୀ କେସ୍ ଉପରେ କିଛି ଦିନ ଜେଲ୍ ହୋଇଗଲା । |
| ଧନେଶ୍ୱର | ପୁରାପୁରି ଦି ବର୍ଷ ସାର୍ । ମୁଁ କାଗଜ ପତ୍ର ସବୁ ଠିକ୍‌ଠାକ୍ କରି ରଖିଥିଲି ବୋଲି । ନ ହେଲେ ଆମକୁ ବି କୋର୍ଟକୁ ଟାଣିଥାନ୍ତା । - କମ ବଦମାସ- ଆମ ବ୍ରାଞ୍ଚଟାକୁ ପୁରା ବଦନାମ କରିଦେଲା.....। |
| ସାମନ୍ତ | ସେ ଯାହାହେଉ ବର୍ତ୍ତମାନ ଆମେ ଆଲର୍ଟ ରହିବାର ସମୟ ଆସିଗଲା । ପୁରୁଣା ଲୋକ ହିସାବରେ ଆପଣଙ୍କ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ । ଷ୍ଟକ୍, ଷ୍ଟୋର୍ ସେକସନ ଗୁଡ଼ା ମଝିରେ ମଝିରେ ଦେଖି ମୋତେ ରିପୋର୍ଟ କରୁଥିବେ । |
| ଧନେଶ୍ୱର | ଠିକ୍ ସାର୍ । ମୁଁ ସେ ସବୁ ଦେଖୁଛି, ହେଲେ ଷ୍ଟୋର୍ ଆସିଷ୍ଟାଣ୍ଟ ପୋଷ୍ଟଟାରେ ଏ ପର୍ଯ୍ୟନ୍ତ କାହାକୁ ରଖିଲେ ନାହିଁ । କାମ ଗୁଡ଼ାକ ଅନେକ ବାକି ରହି ଗଲାଣି ସାର୍ । |
| ସାମନ୍ତ | ହଁ, ସେଇଟା ମୁଁ ଭୁଲିଯାଇଛି । ଆପଣ ସେ ଫାଇଲ୍ ଦେଖି ଅର୍ଡରଟା କରିଦିଅନ୍ତୁ । ସମ୍ ଦାସ ନାଁଟା ଗୋପୀନାଥ ଭଳି ମନେହେଉଛି- ଭେରିଗୁଡ଼୍ ଚ଼ାପ୍ । ଇଣ୍ଟରଭିଉରେ ସବୁଠୁ ଭଲ କରିଥିଲା । ତା ନାଁରେ ଅର୍ଡରଟା ଇସୁ କରିଦିଅନ୍ତୁ । |
| ଧନେଶ୍ୱର | ଇଣ୍ଟରଭିଉ ପରେ ପରେ ଫାଇଲଟା ହେଡ୍ ଅଫିସକୁ ଚାଲିଯାଇଛି ସାର୍। |
| ସାମନ୍ତ | (ହଠାତ୍ ଫୋନ୍ ରିଙ୍ଗ ହେଲା ସାମନ୍ତ ରିସିଭର ଧରିଲେ ) ଆଚ୍ଛା ମୁଁ ଏଥର କାଲ୍‌କାଟାରୁ ଫେରେ । ସେଇଟା ମନେ ପକାଇଦେବ- । ହ୍ୟାଲୋ - କିଏ ... ମି. ପଟ୍ଟଯୋଷୀ, ଭୁଲିଯାଇଛି ଭାଇ । ଏଇ ଦଶ ମିନିଟ୍ ଭିତରେ ଯାଉଛି, ହଁ ....ହଁ ଓ.କେ. । (ସାମନ୍ତ ଫୋନ୍ ରିସିଭର ରଖିଦେଲେ) |
| ସାମନ୍ତ | ଭୋଳା ! ଡ୍ରାଇଭରକୁ କହ ଗାଡ଼ି ବାହାର କରୁ । ଧନେଶ୍ୱର ବାବୁ ମୁଁ ଟିକିଏ ପାଖକୁ ଗୋଟିଏ ଜରୁରୀ କାମରେ ଯାଉଛି । ଆଉ ବୋଧେ ଅଫିସ୍ ଆସିବାକୁ ସମୟ ହେବନାହିଁ । ଆପଣ ମୋ ପ୍ରୋଗ୍ରାମ କଥା ହେଡ୍ ଅଫିସକୁ ଜଣାଇ ଦିଅନ୍ତୁ । |

| | |
|---|---|
| ଧନେଶ୍ୱର | ୟେସ୍ ସାର୍। |
| | (ଧନେଶ୍ୱର ଛିଡ଼ା ହୋଇ ପଡ଼ିଛନ୍ତି - ସାମନ୍ତ ଚାଲିଗଲେ ଭୋଳା ମନଖୁସିରେ ଗୀତଟିଏ ଗୁଣୁଗୁଣୁ ଗାଇ ଫେରିଛି) |
| ଧନେଶ୍ୱର | ଭୋଳାନାଥ। |
| ଭୋଳା | ସାର୍ । |
| ଧନେଶ୍ୱର | ଏଇଟା ଅଫିସ୍ ବୋଲି ମନେ ଅଛି ତ ? |
| ଭୋଳା | ସାର୍ । |
| ଧନେଶ୍ୱର | କ'ଣ ସାର୍ ? |
| ଭୋଳା | ଖରାପ ଅଭ୍ୟାସ ସାର୍। |
| ଧନେଶ୍ୱର | ଏଠି କାମକଲେ ସବୁ ଖରାପ୍ ଅଭ୍ୟାସ ଛାଡ଼ିବାକୁ ପଡ଼ିବ। |
| ଭୋଳା | ଛାଡ଼ିଲି ସାର୍ । (ହଠାତ୍ ଯାଇ ଧନେଶ୍ୱର ବାବୁଙ୍କର ମୁଣ୍ଡ ଚିପିବାକୁ ଲାଗିଛି) । |
| | ଆପଣଙ୍କ ମୁଣ୍ଡ ବିନ୍ଧୁଥିଲା ପରା ସାର୍। ସାହେବ କ'ଣ ପବନ ଭଳିଆ ଆସି ତୋଫାନ୍ ଭଳିଆ ଚାଲିଗଲେ ସାର୍ । |
| ଧନେଶ୍ୱର | ତୁ ଅଦାବେପାରୀ ଜାହାଜ କିଣାରେ କାହିଁ ମୁଣ୍ଡ ଖେଳେଉଛୁ। ତୁ ତୋ କାମରେ ମନ ଦେ। |
| ଭୋଳା | ଦେଲି ସାର୍। ଗୋଟେ କଥା କହିବି ସାର୍ ? |
| ଧନେଶ୍ୱର | କହ । ମୁଣ୍ଡ ଯେତେବେଳେ ମର୍ଦ୍ଦନ କରୁଛୁ ଏଇନା କେତେ କଥା ବାହାର କରିବୁ । କହ .....। |
| ଭୋଳା | ଗୋଟେ ଆଡଭାନ୍ସ ପାଇଁ ଲେଖିଥିଲି ଯେ ସାର୍ ଆପଣ ଚାହିଁଲେ.......। |
| ଧନେଶ୍ୱର | ସାହେବ ଥିଲେ ସେ କଥା କହିଲୁନି । |
| ଭୋଳା | ଆପଣ ଚାହିଁଲେ ସାହେବ ଆଉ କେତେ ବାଟ ଆଜ୍ଞା। ଟିକିଏ ଦୟାକଲେ ଟଙ୍କାଟା ମିଳିଯାଆନ୍ତା। |
| ଧନେଶ୍ୱର | ସାହେବଙ୍କ ଅନୁପସ୍ଥିତିରେ ମୁଁ ତ ପାରିବିନି ଭୋଳା। |
| ଭୋଳା | କି କଥା କହୁଛନ୍ତି। ଏ ଅଫିସରେ ଆପଣଙ୍କୁ କୋଉ କାମଟା ବଳେଇ ଯିବ। |

| | |
|---|---|
| ଧନେଶ୍ୱର | ଆଡଭାନ୍‌ସଟା କୋଉଥି ପାଇଁ ଲେଖିବୁ ? |
| ଭୋଳା | ଆଜ୍ଞା ସ୍ତ୍ରୀ ଚିକିତ୍ସା କଥା ଯାହା ଲେଖିଛି ମିଛ । |
| ଧନେଶ୍ୱର | ତେବେ ......! |
| ଭୋଳା | ପୁରୀ କୋଣାର୍କ ଆଡ଼େ ବୁଲିଯିବାକୁ ସେ ଆମର ଅନେକ ଦିନ ହେଲା ଆଶା କରିଛନ୍ତି ଯେ.... । |
| ଧନେଶ୍ୱର | ଆଶା ତ ବୈତରଣୀରେ ଭୋଳାନାଥ । |
| ଭୋଳା | ସାର୍, ବୈତରଣୀ ଗୋଟାଏ କିବା ନଈ, ଆପଣ ଇଛା କଲେ ପରା ସାତ ସମୁଦ୍ର ପାର କରିଦେଇ ପାରିବେ । |
| ଧନେଶ୍ୱର | ମାଗଣାରେ ମାଗଣାରେ ସାତ ସମୁଦ୍ର ପାର୍ ହୋଇପାରିବନି ଭୋଳା । ତା ପାଇଁ କିଛି ଗଙ୍ଗାଜଳ ଯୋଗାଡ଼ ନ କଲେ । |
| ଭୋଳା | ସାଙ୍ଗେ ସାଙ୍ଗେ କରି ଦେବି ଯେ ସାର୍ । ପେଟରେ ଭୋକ ମୁହଁରେ ଲାଜ କରି ଲାଭ ନାହିଁ ସାର୍ । ପକେଟ୍ ଖାଲି ଆଜ୍ଞା । |
| ଧନେଶ୍ୱର | ପଟେକ୍ କେମିତି ଫୁଲି ଉଠିବ ସେ ବ୍ୟବସ୍ଥା କରିବା । ତୁ ଯା - (ଟଙ୍କାଦେଇ) ସେଥିରୁ ଗୋଟେ ନେଇଆସିବୁ । ଆଉ ଦେଖ ତୁ ଯେମିତି ପୁଣି ଭାଙ୍ଗ ଫାଙ୍ଗ ନ ପକାଉ । |
| ଭୋଳା | ଏଇ ସାଙ୍ଗେ ସାଙ୍ଗେ ଚାଲିଲି ସାର୍ । |
| | (ଭୋଳା ଚାଲିଗଲା - କିଛି ସମୟ ପରେ ଆସିଛି ଗୋପୀନାଥ) |
| ଧନେଶ୍ୱର | ଆସନ୍ତୁ ଗୋପୀନାଥ ବାବୁ - ଆସନ୍ତୁ । ଆଉ ସବୁ ଭଲ ତ । |
| ଗୋପୀ | ଆପଣଙ୍କ ଉପରେ ସବୁ ଭଲ ନିର୍ଭର କରୁଛି ଆଜ୍ଞା । |
| ଧନେଶ୍ୱର | ଆରେ ମୂଳରୁ କହିଛି । ଆଜି ମଧ୍ୟ ସାହେବ ସାଥିରେ କଥାଟା ଫାଇନାଲ୍ ହୋଇଯାଇଛି (କାନପାଖରେ) ସାର୍‌ଙ୍କ କଥାଟା ବୁଝିଦେଲେ ସବୁ ହୋଇଯିବ । |
| ଗୋପୀ | ଗାଁର ଘରବାଡ଼ି ବିକ୍ରୀ କରିବାକୁ ଚେଷ୍ଟା କରୁଛି ହେଲେ ଆପଣଙ୍କ କହିବା ମୁତାବକ ଯୋଗାଡ଼ ହୋଇପାରୁନି । |

ଧନେଶ୍ୱର		ସେଇଟା ସଂପୂର୍ଣ୍ଣ ଆପଣଙ୍କ ଉପରେ ନିର୍ଭର କରେ। କେବଳ ମୁଁ ଆପଣଙ୍କ କଥା ବୁଝିଛି ବୋଲି ସାର୍‌ଙ୍କୁ ପ୍ରେସ୍ କରିବା କଥା। ନ ହେଲେ ତ ମୋ ପାଖକୁ ଯେତେ ଇଣ୍ଟରଭିଉ ଦେଇଥିଲେ ଅଧିକାଂଶ ଧାଉଁଛନ୍ତି।

ଗୋପୀ		ମୋତେ ଆଉ କିଛି ଦିନ ସମୟ ଦିଅନ୍ତୁ । ଯାଇ ଚେଷ୍ଟା କରି ଦେଖିବି।

ଧନେଶ୍ୱର		ସମୟ ମାନେ, ସାହେବ କଲିକତାରୁ ଫେରିବା ପର୍ଯ୍ୟନ୍ତ। ତାଠୁ ବେଶୀ ସମୟ ଦେଇହେବନି। ତାପରେ ବଡ଼ ବଡିଆ କଥା। ସେମାନେ ଯାହା ଚାହିଁବେ କରିପାରିବେ। ଆପଣ ତ ସବୁ ଜାଣିଛନ୍ତି। ଯାଆନ୍ତୁ ପ୍ରଥମେ କୋଡିଏ ଖଣ୍ଡେ ଯୋଗାଡ଼ କରନ୍ତୁ। ଜଏନ୍ କଲାପରେ ବରଂ ବାକିଟା ଦରମାରୁ ଆସ୍ତେ ଆସ୍ତେ ଦେଇଦେବେ।

ଗୋପୀ		ମୁଁ ତା ହେଲେ ଆସୁଛି ଆଜ୍ଞା।

ଧନେଶ୍ୱର		ହଁ, ଯାଆନ୍ତୁ। ସାହେବ ଆର ସପ୍ତାହରେ ଫେରିବେ। ତା ପୂର୍ବରୁ ଯେମିତି ହେଲେ ବ୍ୟବସ୍ଥା କରନ୍ତୁ। ମୁଁ ତ ଅଛି, ଦେଖିବିନି।

ଗୋପୀ		ନମସ୍କାର।

ଧନେଶ୍ୱର		ହଁ ଆସନ୍ତୁ । ନମସ୍କାର।

(ଗୋପୀ ଚାଲିଯାଇଛି - ଆସିଛି ଭୋଳା)

ଭୋଳା		ବହୁତ୍ ଭଲ ଲୋକ ଆଜ୍ଞା। ଆଜିକାଲି ପିଲାଙ୍କ ଭଳି ନୁହେଁ। ଆମରି ସାଇରେ ପାଗଳା ମାଷ୍ଟର ଘରେ ରହନ୍ତି।

(ଭୋଳା ପକେଟ୍ ଭିତରୁ ବୋତଲଟିଏ ବାହାର କରିଦେଇଛି)

ଧନେଶ୍ୱର		ଭୋଳା, ତୁ ବାହାରକୁ ଯା, ଦେଖୁଥା ସାହେବ ପୁଣି ଫେରିପାରେ।

ଭୋଳା		ଆଉ ଅଫିସ୍ ଆସିବେନି ବୋଲି ପରା କହିଗଲେ ସାର୍। ଆପଣ ନିର୍ଭୟରେ ଚଲାନ୍ତୁ, ମୁଁ ବାହାରେ ଅଛି।

(ଧନେଶ୍ୱର ଗୋଟିଏ ଗ୍ଲାସ୍ ବାହାର କରି ମଦଢ଼ାଳି ପିଇବାକୁ ଆରମ୍ଭ କଲେ। ଭୋଳା

ଖଣ୍ଡେ ବିଡ଼ି ଲଗାଇ ବାହାରକୁ ଗଲା ।କିଛି ସମୟ ପରେ ବାହାରୁ ଭୋଳାର ପାଟି ଶୁଣାଗଲା )

ଭୋଳା — ଆରେ ବାବୁ ମନାକଲି ପରା । ଆଜି ଅଫିସରେ କେହି ନାହାନ୍ତି । ଆଛା ଲୋକ ଆପଣ ।

(ଆଗେ ଆଗେ ପରେଶ ତା ପଛେ ପଛେ ଭୋଳାର ପ୍ରବେଶ)

ଭୋଳା — ଆପଣ କାହାକୁ ଦେଖା କରିବାକୁ ଚାହାନ୍ତି କହିଲେ, ସାହେବ ତ ନାହାନ୍ତି ।

ପରେଶ — ସାହେବଙ୍କ ପାଖରେ ମୋର କାମ ନାହିଁ ।

ଭୋଳା — ତା ହେଲେ କାହାକୁ ଖୋଜୁଛନ୍ତି ?

ପରେଶ — ଅଫିସରେ କିଏ ତ ହେଲେ ଥିବେ ।

ଭୋଳା — ଖାଲି ଜେ ଓ ସାର୍ ଅଛନ୍ତି ।

ପରେଶ — ଧନେଶ୍ୱର ବାବୁ ତ, ବେଶ ତାଙ୍କରି ପାଖରେ ଚାଲିଯିବ ।

ଭୋଳା — ଏବେ ସେ କାହାକୁ ଦେଖା କରିପାରିବେନି ।

ପରେଶ — ପାରିବେ । ସବୁ ହୋଇପାରିବ । ମୋ ପାଇଁ କିଛି ଅସୁବିଧା ହେବନି । ବାଟ ଛାଡ଼ିଲ ।

ଭୋଳା — ନାଁ, ଆଛା ଟିକିଏ ରୁହନ୍ତୁ ମୁଁ ପଚାରି ଆସେ ।

(ଭୋଳା ଯାଉଥିଲା କିନ୍ତୁ ତାକୁ ପଛକୁ କରି ପରେଶ ଚାଲିଗଲା )

ପରେଶ — ନମସ୍କାର ସାର୍ । ଚାଲାନ୍ତୁ ଚାଲାନ୍ତୁ ସାର୍, ଏତେ ବ୍ୟସ୍ତ ହବାର କଣ ଅଛି । ବରଂ ଯଦି ଅଧିକ ଅଛି ମୋତେ ଦେଇ ଦିଅନ୍ତୁ ସାର୍ । ପାଠ ପଢ଼ିଲା ବେଳେ ବାପାଙ୍କ ପଇସାରେ ଅନେକ ପିଉଥିଲି ସାର୍, ଏବେ ବେକାର ଜୀବନ ଭିତରେ ଆଉ ସୋମରସ ସେବା ଭାଗ୍ୟରେ ବିଶେଷ ଜୁଟୁନି ସାର୍... । ଆହା ମୋତେ ନ ଦେଲେ ନାହିଁ ସେ ସବୁ ରଖିଦେଲେ କାହିଁକି ସାର୍ ।

ଧନେଶ୍ୱର — ଆପଣ ?

ପରେଶ — ଚିହ୍ନି ପାରୁନାହାନ୍ତି ସାର୍ । ଟ୍ରିପଲ ପି ସାର୍ । ମାନେ ପି.ପି.ପି. ଓରଫ୍ ପରେଶପ୍ରସାଦ ପରିଜା । ସାର୍ । ତଥାପି ଚିହ୍ନିପାରୁନାହାନ୍ତି ସାର୍ ।

ଧନେଶ୍ୱର ନାଁ .... ଚିହ୍ନିଲାଭଳି ମୋର କାହିଁ ମନେ ହେଉନି ।

ପରେଶ ମୋର କିନ୍ତୁ ଥରେ ଦେଖା ହୋଇଗଲେ , ଏଇଠି ଫଟୋ ରହିଯାଏ ସାର୍ । ଏ ସବୁ ଆଗରୁ ହଉ ନ ଥିଲା ସାର୍ । ମୁଁ ବି ଆପଣଙ୍କ ଭଳି ଭୂଲି ଯାଉଥିଲି । କିନ୍ତୁ ଋଷିକେଶରୁ ଜଣେ ସିଦ୍ଧବାବାଙ୍କ କୃପାରୁ ସେ ରୋଗଟି ସଂପୂର୍ଣ୍ଣ ଭଲ ହୋଇଯାଇଛି ସାର୍ ।

ଧନେଶ୍ୱର ଆପ ଣ ଆଗରୁ ଏଇ ଅଫିସକୁ କେବେ ଆସିଥିଲେ ?

ପରେଶ ଆସିଥିଲି ସାର୍ । ଆପଣଙ୍କ ଷ୍ଟୋର ଆସିଷ୍ଟାଣ୍ଟ ପୋଷ୍ଟର ଇଣ୍ଟରଭିଉ ଦେବାକୁ ଆସି ଇଣ୍ଟରଭିଉ ବୋର୍ଡକୁ ତୋବା ତୋବା କରି ଯାଇଥିଲି ସାର୍ । ଅଧିନ ସେଇ ଟ୍ରିପଲ ପି. ସାର୍ ।

ଧନେଶ୍ୱର ଆପଣଙ୍କର ମୋ ପାଖରେ କାମ କିଛି ଅଛି ?

ପରେଶ ଏ ଦୁନିଆଁରେ ପ୍ରତ୍ୟେକ ମଣିଷ ପାଖରେ ପ୍ରତ୍ୟେକ ମଣିଷର କିଛି ନା କିଛି କାମ ଅଛି ସାର୍ । ମୋର ଆପଣଙ୍କ ପାଖରେ କାମ ଅଛି । ଆପଣଙ୍କର ମୋ ପାଖରେ କାମ ଅଛି । ମୁଁ ଆପଣଙ୍କର ସେବା କରିପାରିବି, ଆପଣ ମୋ ସେବା କରିପାରିବେ ହେଲେ......... ।

ଧନେଶ୍ୱର ଆପଣ କ'ଣ କହୁଛନ୍ତି ମୁଁ ତ କିଛି ବୁଝିପାରୁନି ?

ପରେଶ ଧୀରେ ଧୀରେ ବୁଝିଯିବେ ସାର । ଥରେ ଦିଥର ଦେଖା ସାକ୍ଷାତରେ କିଏ କଣ କାହାକୁ ବୁଝିପାରେ । ତା ପାଇଁ ସମୟ ଦରକାର । ତା ପରେ ଯାଇ ଆସ୍ତେ ଆସ୍ତେ ଫଗ୍ କ୍ଲେଦେର୍ କ୍ଲିଅର ହୋଇଯାଏ ସାର୍ । ହେ. ହେ. ବସୁଛି ସାର୍ । (ଗୋଟିଏ ଚୌକୀ ଟାଣିଆଣି ବସିଯାଏ ।)

ଧନେଶ୍ୱର ଆପଣଙ୍କ କାମଟା କଣ ପ୍ରଥମେ କହିଲେ?

ପରେଶ ହେ.. ହେ... । ସିଧା କହିବି ସାର୍ ?

ଧନେଶ୍ୱର ମାନେ ?

ପରେଶ ମାନେ ସବୁବେଳେ କଥାଟାକୁ ବଙ୍କାଇ ବୁଲେଇ କହିବା ପିଲାଦିନର ମୋର ଗୋଟାଏ ବ୍ୟାଡାଭ୍ୟାସ ସାର୍ । ସେଇଥିପାଇଁ ଅନେକଙ୍କଠୁ

ବେଳେବେଳେ ଗାଳି ଶୁଣିବାକୁ ପଡ଼ିଥାଏ ସାର୍।

ଧନେଶ୍ୱର — ଓଃ, ଆପଣଙ୍କର ଯାହା କହିବା କଥା ସିଧା କହନ୍ତୁ।

ପରେଶ — ମୋର ସେଇ ଷ୍ଟୋର୍ ଆସିସଷ୍ଟାଣ୍ଟ ପୋଷ୍ଟଟି ଦରକାର ସାର୍।

ଧନେଶ୍ୱର — ସେଟା ଫିଲପ୍ ହୋଇଗଲାଣି ଆଉ ଭେକାନ୍‌ସି ନାହିଁ।

ପରେଶ — ସେଥିରେ କ'ଣ ଅଛି ସାର୍। ଆପଣ ଚାହିଁଲେ ଆଉ ଭେକାନ୍‌ସି ସୃଷ୍ଟି କରିପାରିବେ ସାର୍।

ଧନେଶ୍ୱର — ନାଁ, ସେ କ୍ଷମତା ମୋର ନାହିଁ।

ପରେଶ — ଆପଣ ଚାହିଁଲେ ସବୁ ହୋଇପାରିବ ସାର୍। ଆପଣ ଚେଷ୍ଟାକଲେ (ହଠାତ୍ କାନପାଖକୁ ଯାଇ ଫୁସୁଫୁସୁ କରି କଣ ଗୁଡ଼ାଏ କହିଚାଲିଲା)

ଧନେଶ୍ୱର — ନାଁ, ନାଁ, ଏ ସବୁ ଏଠି ଚଳିବନି। ଆପଣ ଦୟାକରି ଗଲେ।

ପରେଶ — ମୋତେ ଏମିତି ନିରାଶ କରନ୍ତୁନି ସାର୍।

ଧନେଶ୍ୱର — ଆପଣ ଯିବେ ନା ଏଠି ଫାର୍ସ କରୁଥିବେ। ଭୋଳା-ଭୋଳା (ଭୋଳା ଆସିଛି)

ଭୋଳା — ଚାଲିଲେ ବାବୁ ଚାଲିଲେ (ଠେଲି ନେଉଛି)

ପରେଶ — ଠିକ୍ ଅଛି ସାର୍। ଏତେ କହିବି ମୋତେ ନିରାଶ କରୁଛନ୍ତି ସାର୍। ଏ ଜୀବନ ସାରି ଦେବାକୁ ଏଇ ଦେଶରେ ଟ୍ରେନ୍ ଲାଇନର ଅଭାବ ନାହିଁ ସାର୍। ନିଶ୍ଚୟ ସୁଇସାଇଡ୍ କରିଦେବି। ନିଶ୍ଚୟ ସାରିଦେବି ସାର୍- ନିଶ୍ଚୟ।

(ପରେଶକୁ ଭୋଳା ଟାଣି ଟାଣି ନେଇଯାଇଛି- ମଞ୍ଚ ଅନ୍ଧକାର ହୋଇଛି ଏବଂ ସେଇ ଅନ୍ଧାର ଭିତରେ ଗୋଟିଏ ଟ୍ରେନ୍ ଦ୍ରୁତ ଗତିରେ ଚାଲିଯିବାର ଶବ୍ଦ ଭାସିଆସିଛି)।



# ଦୃଶ୍ୟ - ୩

## - ଗୋପୀର ଘର -

ସମୟ - ସକାଳ

(ମାଧବୀ ଗୋଟିଏ ଆଟାଚି ଧରି ପ୍ରବେଶ କରିଛି - ଦେଖିଛି କେହି ନାହାନ୍ତି ଭିତରକୁ ଯାଇଛି ପୁଣି ଫେରି ଆସି ଦେଖିଲା ବେଳକୁ ମାଷ୍ଟର କାକା ପଶି ଆସିଛନ୍ତି)

ମାଷ୍ଟର — କିଏ ? ଭିତରେ କିଏ ?

ମାଧବୀ — (ନୀରବ ରହିଛି) ।

ମାଷ୍ଟର — ମୋ କଥାର ଉତ୍ତର ଦଉନୁ କାହିଁକି ? କ'ଣ ମତଲବ୍ ନେଇ କେହି ନ ଥିବା ଅବସ୍ଥାରେ ଏ ଘରେ ପଶିଥିଲୁ ! ଜବାବ୍ ଦେ ।

ମାଧବୀ — କିନ୍ତୁ ସାମ୍ନା ପାନ ଦୋକାନୀ କହିଲା, ଏଇଟା ମାଷ୍ଟର କାକାଙ୍କ ଘର- ଏଇଠି ଗୋପୀବାବୁ ଭଡ଼ାରେ ରହନ୍ତି ।

ମାଷ୍ଟର — ସେ ସବୁ ବାଜେ କଥା । ଏଠି କୌଣସି ଗୋପୀନାଥ ରହୁନାହାନ୍ତି ।

ମାଧବୀ — ମୋର ବୋଧହୁଏ ଭୁଲ୍ ହୋଇଯାଇଛି ...... ।

ମାଷ୍ଟର — ବୋଧହୁଏ ନୁହେଁ । ଜାଣି ଜାଣି ଏମିତି ଗୋଟାଏ ବାହାନା ଦେଖାଇ ଏ ଘରୁ କିଛି ଗୋଟେ ଉଠେଇ ଚାଲି ଯାଇଥାନ୍ତୁ । ନାଇଁ...?

ମାଧବୀ — ନା, ମୋତେ ବିଶ୍ୱାସ କରନ୍ତୁ । ଚୋ଼ରୀ କରିବା ଉଦ୍ଦେଶ୍ୟ ନେଇ

ମୁଁ ଏଠି ପଶି ନ ଥିଲି ।

ମାଷ୍ଟର ସେ ଅଭିନୟ ଅନ୍ୟ କେଉଁଠି ଦେଖେଇବୁ । ମୁଁ ତୋତେ ପୋଲିସରେ ଦେବି ।

ମାଧବୀ ଦେଖନ୍ତୁ ମୋତେ ବିଶ୍ୱାସ କରନ୍ତୁ ।

ମାଷ୍ଟର କାହାକୁ ବିଶ୍ୱାସ କରିବି । ଜଣେ ଏଇମିତି ମୋ ଘରେ ପଶି ଅଭିନୟ କରିଥିଲା, ଆଉ ମୁଁ ବି ତାକୁ ବିଶ୍ୱାସ କରିଥିଲି । ହେଲେ ସେ କଣ କଲା .... ଏ ଘରୁ ସର୍ବସ୍ୱ ଲୁଟିନେଇ କୁଆଡ଼େ ଚାଲିଗଲା- ମୁଁ ତୋତେ ନିଶ୍ଚୟ ପୋଲିସ୍‌ରେ ଦେବି ।

ମାଧବୀ ନାଁ, ମୁଁ ଚୋରୀ କରିନି କି ମୋର ବି ସେମିତି ଉଦ୍ଦେଶ୍ୟ ନ ଥିଲା ।

ମାଷ୍ଟର ମିଛ କଥା । ମୋହରି ପାଖରୁ ଗୋପୀକୁ ଚୋରାଇ ନେବାକୁ ତୁ ଏଠିକୁ ଆସିନୁ ? ଜବାବ୍ ଦେ ?

ମାଧବୀ ମାଷ୍ଟର କାକା - ଆପଣ - !

(ମାଷ୍ଟର କାକା ହୋ ହୋ ହୋଇ ହସି ଉଠିଛନ୍ତି - ମାଧବୀ ଯାଇ ପାଦଧୂଳୀ ନେଇଛି) ।

ମାଷ୍ଟର ହେଲା ହେଲା ମା ମାଧବୀ । ଏଇ ସକାଳ ବେଳା ଟ୍ରେନରେ ଆସିଲୁ ନା ? ଟିକିଏ ମଜା କରିବାକୁ ଯାହା ଅଭିନୟ କଲି- ମୋତେ କ୍ଷମା ଦେବୁ ମା । ହେଲେ ଦେଖିଲି ତୁ ଭୁବନି ମାଷ୍ଟରର ଠିକ୍ ଝିଅ । ବାପା ଯେମିତି ନିର୍ଭିକ, ତୁ ବି ସେମିତି । (ପୁଣି ହସିଉଠିଛନ୍ତି) । ଯା ମା, ଘର ଭିତରକୁ ଯା, ଗୋପୀ ଟିଉସନକୁ ଯାଇଛି ଏବେ ଫେରିବ । ଯା - ଗୋଡ଼, ହାତ ଧୋଇ ବିଶ୍ରାମ ନେ । ମୁଁ ବଜାରରୁ ତୋ ପାଇଁ କିଛି ଜଳଖିଆ ନେଇଆସେ ।

(ମାଷ୍ଟର ବାହାରକୁ ଓ ମାଧବୀ ଆଟାଚି ଧରି ଭିତରକୁ ଚାଲିଯାଏ ଏବଂ କିଛି ସମୟ ପରେ ମାଧବୀ ଫେରିଆସେ ଏବଂ ଘରର ଜିନିଷ ସଜାଡ଼ିବାକୁ ଲାଗେ । ବାହାରୁ ଆସେ ଗୋପୀ)

| | |
|---|---|
| ଗୋପୀ | ତୁମେ କେତେବେଳୁ ମାଧବୀ ? |
| ମାଧବୀ | ସକାଳ ଟ୍ରେନରେ ଆସିଲି । |
| ଗୋପୀ | ଏକା ଏକା ? |
| ମାଧବୀ | ହଁ । |
| ଗୋପୀ | ମୁଁ କିନ୍ତୁ ନିଜେ ଯାଇ ତୁମକୁ ନେଇଆସିବି ବୋଲି ଚିଠିରେ ଲେଖିଥିଲି । |
| ମାଧବୀ | ସେ ଚିଠିରେ ଚାକିରୀ ପାଇସାରିଲା ପରେ ନେଇଆସିବ ବୋଲି ଲେଖିଛ । |
| ଗୋପୀ | ସେ ପର୍ଯ୍ୟନ୍ତ ଅପେକ୍ଷା କଲନି କାହିଁକି ? |
| ମାଧବୀ | ଗାଁରେ ନିରାପଦରେ ରହିହେଉନି । ତାପରେ ନିକଟରେ ତୁମକୁ ଚାକିରୀ ମିଳିଯିବ, ତାର କୌଣସି ମାନେ ନାହିଁ । |
| ଗୋପୀ | ଏଥର ନିଶ୍ଚୟ ମିଳୁଛି । |
| ମାଧବୀ | ଗତ ଚାରିବର୍ଷ ହେଲା ଏଇକଥା ଅନେକଥର ଶୁଣୁଛି । |
| ଗୋପୀ | ଗାଁରେ ଘରବାଡ଼ି ବିକ୍ରି କରିବାକୁ ଦାଦାଙ୍କୁ ଚିଠି ଲେଖିଛି । ସେଇଠୁ କିଛି ଟଙ୍କା ମିଳିଯିବ ବୋଲି ଦାଦା ଚିଠି ଲେଖିଛନ୍ତି । ସେ ଟଙ୍କା ଦେଇ ମୁଁ ନିଶ୍ଚୟ ଚାକିରୀ ପାଉଛି । |
| ମାଧବୀ | ତୁମର ଭିହ କିନ୍ତୁ ବିକ୍ରୀ ହୋଇପାରୁନି । |
| ଗୋପୀ | କାହିଁକି ? |
| ମାଧବୀ | ମୁଁ ମନା କରିଦେଇଛି । |
| ଗୋପୀ | ତମେ ମନା କରିଦେଇଛ ? ତମେ କଣ ଜାଣିନ ଯେ ଏଇ ଟଙ୍କାଟା ଉପରେ ମୋର ଚାକିରୀ ଭବିଷ୍ୟତ ସବୁ ନିର୍ଭର କରୁଛି । |
| ମାଧବୀ | ପଚାଶ ହଜାର ଟଙ୍କାର ସେଇ ସଂପତ୍ତିକୁ ଧନୀ ସାହୁ ମୋଟେ ଦଶ ହଜାର ଟଙ୍କା ଦେବ ବୋଲି ରାଜି ହେଲା । ତାପରେ ତୁମର ଭିଟାମାଟିଟା ଏମିତି ଭାବରେ ବିକ୍ରୀ ହୋଇଯିବାଟା ମୁଁ ପସନ୍ଦ କଲିନି । |

ଗୋପୀ	ତମ ପସନ୍ଦ ଅପସନ୍ଦ ଉପରେ ମୋ ଜୀବନଧାରା ବଦଳିଯିବ ବୋଲି କେମିତି ଭାବି ପାରିଲ। ତମକୁ ସେ ଅଧିକାର ଦେଲା କିଏ ?

ମାଧବୀ	ଅଧିକାରକୁ ହାସଲ କରିବାକୁ ହୁଏ ବୋଲି ପିଲାଦିନେ ତୁମେ ଅନେକଥର କହିଛ ।

ଗୋପୀ	କହିଥାଇ ପାରେ। କିନ୍ତୁ ବର୍ତ୍ତମାନର ସମୟ ସୁଅରେ ସେ ସବୁ ମୂଲ୍ୟବୋଧ ବଦଳିଯାଉଛି । କାଲିର ସତ୍ୟ, ଆଜିର ଦିବାଲୋକରେ ମିଥ୍ୟା ବୋଲି ପ୍ରମାଣିତ ହେଇଯାଉଛି।

ମାଧବୀ	ସେ ସବୁ ବଦଳି ଯାଉପଛେ ମୋର ପୂର୍ଣ୍ଣ ବିଶ୍ୱାସ ତୁମେ କେବେ ବଦଳି ଯାଇ ପାରିବନି। ତୁମର ଟଙ୍କା ଦରକାର। ମୁଁ ଟଙ୍କା ଧରି ଆସିଛି।

ଗୋପୀ	ତମେ ଟଙ୍କା ଧରି ଆସିଛ ?

ମାଧବୀ	ହଁ ବାପା ମରିବା ପୂର୍ବରୁ ଏତକ ତାଙ୍କ ପାଣ ବୁକରେ ରଖିଯାଇଥିଲେ। ମୋରି ବାହାଘରରେ ଏତକ ଖର୍ଚ୍ଚ ହେବ ବୋଲି କହି ଯାଇଥିଲେ।

ଗୋପୀ	କିନ୍ତୁ ଆମର ବାହାଘର ଯେ ଏ ପର୍ଯ୍ୟନ୍ତ ହେଇନି।

ମାଧବୀ	ବାହାଘର ତୁମେ କାହାକୁ କହୁଛ। ଭୋଜିଭାତ, ରୋଷଣୀ, ମଙ୍ଗଳ ମହୁରୀ ନା ବ୍ରାହ୍ମଣର ମନ୍ତ୍ର। ସେ ସବୁରେ ମୋର ବିଶ୍ୱାସ ନାହିଁ।

ଗୋପୀ	ତମର ବିଶ୍ୱାସ ନ ଥାଇ ପାରେ। କିନ୍ତୁ ସମାଜ ତ ଯ୍ୟ'କୁ ଗ୍ରହଣ କରିବ ନାହିଁ।

ମାଧବୀ	ସାମାଜିକ ସ୍ୱୀକୃତି ଅପେକ୍ଷା ମନର ସ୍ୱୀକୃତିକୁ ମୁଁ ଅଧିକ ସମ୍ମାନ ଦିଏ। ଆମେ ପରସ୍ପରକୁ ଯଦି ଭଲପାଉଛେ- ଯଦି ପରସ୍ପର ସୁଖ ଦୁଃଖରେ ବାନ୍ଧି ହୋଇଯାଉଛେ- ତା'ଠାରୁ ଭଳି ପବିତ୍ର ବନ୍ଧନ ଆଉ କ'ଣ ଅଛି ବୋଲି ଭାବୁଛ ? ଦେଖ, ଏଇ ଟଙ୍କାଟା ମୋଠୁ ଦାନ ନ ଭାବି ଧାର ହିସାବରେ କ'ଣ ଗ୍ରହଣ କରିବନି?

ଗୋପୀ	ମାଧବୀ .....!

(ଗୋପୀ ଆବେଗଭରା କଣ୍ଠରେ ମାଧବୀ ଡାକି ହାତ ବଢ଼େଇ ଦେଇଛି । ମାଧବୀର ଆଖି ଆନନ୍ଦାଶ୍ରୁରେ ସଜଳ ହୋଇ ଉଠିଛି ଏବଂ ସେ ବି ହାତ ବଢ଼େଇ ଦେଇଛି । ହଠାତ ଏକ ମଧୁର ସଂଗୀତର ଧ୍ୱନି ଶୁଣାଯାଇଛି ।ବାହାରୁ ମାଷ୍ଟର କାକାଙ୍କର ପାଟି ଶୁଣାଯାଇଛି) ।

ମାଷ୍ଟର	ମୁଁ ମୂଳରୁ କହୁ ନ ଥିଲି ଗୋପୀନାଥ । ବିଚାରୀକୁ ପାଖକୁ ନେଇ ଆ । ଏ ଘର ପୁରି ଉଠିବ । ସିଏ ପରା ମା ଲକ୍ଷ୍ମୀ ।

(ମାଧବୀ ଲାଜେଇଯାଇ ଭିତରକୁ ଚାଲିଗଲା ।)

ଆରେ ପାଗଳି ଶୁଣି ଯା ..... ।

ମାଧବୀ	(ଫେରି ଆସିଛି .... ।)

ମାଷ୍ଟର	(ହାତରେ ଧରିଥିବା ପୁଡ଼ିଆଟି ବଢ଼େଇଦେଇ) ଏଇ ଘରେ ତୁ ପ୍ରଥମେ ପାଦ ଦେଲୁ ମୁହଁ ମିଠା କରିବୁନି । ନେ ସମସ୍ତଙ୍କୁ ବାଣ୍ଟି ଦେ .... (ମାଧବୀ ଭିତରକୁ ଚାଲିଯାଇଛି) ।

ମାଷ୍ଟର	ଟଙ୍କା ପାଇଲେ ପରା ସେମାନେ ଚାକିରୀଟା ଦେଇଦେବେ ବୋଲି କହିଛନ୍ତି । ତୁ ଡେରି ନ କରି ଆଜି ଚାଲିଯା ଆଉ ହାତେ ହାତେ ଅର୍ଡରଟା ନେଇଆ... । ମା. ମାଧବୀ (ଭିତରକୁ ଯାଇଛି) ।

(ଟାଇପ ଶବ୍ଦ ସଙ୍ଗେ ଆସ୍ତେ ଆସ୍ତେ ଆଲୋକର ରଙ୍ଗ ବଦଳିଯାଏ । ଗୋପୀର ମୁହଁରେ ହସଖେଳି ଉଠେ । ସଙ୍ଗେ ସଙ୍ଗେ ଆଲୋକ କମିଯାଏ। ଟାଇପ୍ ରାଇଟର ଶବ୍ଦ ଭାସିଆସେ ଏବଂ ଗୋପୀ ଘରର କୋନରୁ ଆଲୋକ ଲିଭିଯାଏ ଓ ଅଫିସ କୋନରେ ଜଳିଉଠେ।

## ସ୍ୱପ୍ନ ବିଳାସ ଦୃଶ୍ୟ

### ଅଫିସ୍ ଆଭ୍ୟନ୍ତର

(ଦେଖାଯାଏ ମି. ସାମନ୍ତ ଚେୟାର ଉପରେ ବସି କଣ ଗୋଟେ ଫାଇଲରେ ଦସ୍ତଖତ କରୁଥାନ୍ତି ଓ ପାଖରେ ଗୋପୀନାଥ ଠିଆ ହୋଇଥାଏ)

ମି. ସାମନ୍ତ — I am really proud up you Mr. Gopinath. ଗୋଟିଏ ମାସ ଭିତରେ ତୁମେ ଯେମିତି ସିନସିୟରିଟି ଦେଖାଇ ପାରିଛ ସତରେ ମୁଁ ବହୁତ୍ ଖୁସି। ଏମିତି ଭାବରେ କାମ କରି ଚାଲିଲେ ତୁମର ଭବିଷ୍ୟତ ନିଶ୍ଚୟ ଉଜ୍ଜ୍ୱଳମୟ ହେବ।

ଗୋପୀ — ସେ ସବୁ ଆପଣଙ୍କର ଶୁଭେଚ୍ଛା ପାଇଁ। ମୁଁ କେବଳ କାମ କରିଚାଲିଛି।

ସାମନ୍ତ — ନା, ତମ ଉପରେ ଭଗବାନଙ୍କର ଆଶିର୍ବାଦ ରହିଛି, ତମେ କାମ କରିଚାଲ।

ଗୋପୀ — ସାର୍ ।

ସାମନ୍ତ — ମୋର ମତ କ'ଣ ଜାଣ ଗୋପୀନାଥ। କମ୍ପାନୀ ଯେମିତି ପ୍ରତ୍ୟେକ କର୍ମଚାରୀଙ୍କର କର୍ମସଂସ୍ଥାନର ଦାୟିତ୍ୱ ବହନ କରୁଛି, ତମେ ସମସ୍ତେ ସେମିତି କମ୍ପାନୀର ଉନ୍ନତି ପାଇଁ ଲାଗିପଡ଼। ତାର ରିୱାର୍ଡ ନିଶ୍ଚୟ ମିଳିବ। ଯାଅ.....।

ଗୋପୀ — (ଚାଲିଯାଉଥିଲା)

ସାମନ୍ତ — ଗୋପୀନାଥ, ନିଅ ତୁମର ପ୍ରଥମ ମାସର ପେ ପ୍ୟାକେଟ୍। ମୁଁ ଆଜି ନିଜ ହାତରେ ଦେଉଛି। ଆଉ ବଡ଼ଭାଇ ହିସାବରେ ଗୋଟେ ଅନୁରୋଧ ବି କରୁଛି।

ଗୋପୀ — ସାର୍ ।

ସାମନ୍ତ — ଯେତେ ଯାହା ଅସୁବିଧା ହେଲେ ବି ଏଇ ପ୍ରଥମ ମାସରୁ କିଛି କିଛି ସେଭ୍ କରିବାକୁ ଚେଷ୍ଟା କର। ଆଉ ସବୁବେଳେ ତାକୁ ଷ୍ଟିକ କର। ଦେଖିବ ତୁମର ପାରିବାରିକ ଜୀବନ କେତେ ସହଜ ସୁନ୍ଦର ହୋଇ ହସି ଉଠିବ।

| | |
|---|---|
| ଗୋପୀ | ଆପଣଙ୍କ କଥା ସବୁଦିନ ମନେ ରହିବ ସାର୍ । |
| ସାମନ୍ତ | (ଉଠିପଡ଼ି) Wish you best of luck. ଆସୁଛି । |

(ସାମନ୍ତ ଚାଲିଯାଆନ୍ତି - ଗୋପୀ ମୁହଁରେ ହସ ଖେଳିଉଠେ, ସଙ୍ଗେ ସଙ୍ଗେ ଅଫିସ୍ କୋନରୁ ଆଲୋକ ଲିଭିଯାଏ ।)

## (ସ୍ୱପ୍ନ ବିଳାସ)

### ଗୋପୀର ଘର - ସମୟ ସଂଧ୍ୟା

(ଭିତରୁ ଗୋଟିଏ ସୁଇଟର ବୁଣି ବୁଣି ଆସେ ମାଧବୀ । ମୁହଁରେ ଗୀତର ସ୍ୱର ଲାଗିଥାଏ - ଗୋପୀ ଗୋଡ ଚିପି ଚିପି ପ୍ରବେଶ କରିଛି ଏବଂ ମାଧବୀର ଅଜାଣତରେ ତା କାନ ପାଖରେ ପାଟି କରି ଉଠିଛି- ମାଧବୀ ଚମକି ପଡ଼ିଛି)

| | |
|---|---|
| ଗୋପୀ | ହେଇ (ଅପେକ୍ଷାକୃତ ବଡ଼ ପାଟିରେ) |
| ମାଧବୀ | (ଚମକି ପଡ଼ିଛି) । |
| ଗୋପୀ | ଏମିତି ଚମକି ପଡ଼ିଲ ଯେ । |
| ମାଧବୀ | ଆହାରେ ମୋ ବୀର ପୁରୁଷ । ଅଚାନକ କାନ ପାଖରେ ପାଟିକଲେ କିଏ ଚମକି ନ ପଡ଼ିବ ଯେ । |
| ଗୋପୀ | (ହାତ ଧରିନେଇ) ସତେ ? |
| ମାଧବୀ | (ହାତ ଛଡେଇ ନେଇ ଦୂରେଇ ଯାଇଛି) । |
| ଗୋପୀ | ଏମିତି ଦୂରେଇ ଯାଉଛ ଯେ.......! |
| ମାଧବୀ | କାହିଁକି .... କେବେ ପାଖକୁ ଡାକିଛ ? ବରଂ ମୁଁ ଲକ୍ଷ୍ମୀହୀନା ଭଳିଆ ନିଜେ ଯେତେବେଳେ ଆସିଗଲି ଦୂର୍ ଦୂର୍ ମାର୍ ମାର୍ କରି ସବୁବେଳେ ଦୂରେଇ ଦେଇଛ । |
| ଗୋପୀ | ସେଇ ଭୁଲ୍ ପାଇଁ ଏଇ ଦେଖ କାନ ଧରୁଛି । ଏଥର ପାଖକୁ ଆସିବନି ? |
| ମାଧବୀ | କ'ଣ କହିବା କଥା କହୁନା । ସେଠି କହିଲେ ବି ଶୁଣି ପାରିବି । |
| ଗୋପୀ | (ପାଖକୁ ଆସି) ଦେଖ ମୁଁ ଆଜି ପ୍ରଥମ ମାସର ଦରମା ପାଇଛି । |

(ଟଙ୍କାରୁ କିଛି ବାହାର କରି ଥରକୁ ଥର ଦେଇଛି) ଦେଖ ଏଇଟା ମାଷ୍ଟର କାକାଙ୍କ ନୂଆ ଡ୍ରେସ ପାଇଁ, ଏଇଟା ତୁମ ପାଇଁ , ଏଇଟା ମୋ ପାଇଁ। ଏଇଟା ଆମ ଦୁହିଁଙ୍କ ପାଇଁ। ମାନେ ଘରଖର୍ଚ୍ଚ ପାଇଁ। ଆଉ ଏଇଟା ଆମ ଦୁହିଁଙ୍କର "କା" ପାଇଁ।

ମାଧବୀ	କା ? ଆମ ଦୁହିଁଙ୍କର କା ପାଇଁ ମାନେ ?

ଗୋପୀ	"କା"ମାନେ , ତୁମେ ଆଉ ମୁଁ ହୋଇ ଯିଏ ଆଗକୁ ଆସିବ ତା ପାଇଁ। ତଥାପି ବୁଝିପାରିଲନି (ହାତରେ ପିଲା ଖେଳେଇବାର ଅଭିନୟ କରି) କୁଆଁ କୁଆଁ।

(ସଙ୍ଗେ ଦୁହେଁ ହସି ଉଠିଛନ୍ତି। ମାଧବୀ ଟଙ୍କା ନେଇ ଭିତରକୁ ଚାଲି ଯାଇଛି, ସେଇ ହସ ଭିତରେ ପୁଣି ଆଲୋକ ଆସ୍ତେ ଆସ୍ତେ କମିଆସୁଛି ଓ ଟାଇପ୍ ରାଇଟର ଶବ୍ଦ ଆସ୍ତେ ଆସ୍ତେ ବଢ଼ିଚାଲିଛି।)

**ସ୍ୱପ୍ନ ବିଳାସ ଶେଷ**

(ଗୋପୀ ସେଇମିତି ଏକା ଏକା ବସି ହସି ଚାଲିଛି ।)

ମାଧବୀ	(ହଠାତ୍ ପଶି ଆସିଛି) ଆରେ ଏଠି ଏକା ଏକା ବସି ପାଗଳଭଳି ହସୁଛ କାହିଁକି ?

ଗୋପୀ	(ସ୍ୱପ୍ନ ରାଜ୍ୟରୁ ଫେରିଆସି) ଏଁ ନାଁ... ଏମିତି.....।

ମାଧବୀ	କ'ଣ ମ । ଏଁ ନାଁ ଏଇମିତିର ଅର୍ଥ କଣ ?

ଗୋପୀ	ମାଷ୍ଟର କାକା କୁଆଡେ ଗଲେ ?

ମାଧବୀ	ଭିତରେ ଅଛନ୍ତି । କିନ୍ତୁ କାହିଁକି ?

ଗୋପୀ	ଭାବୁଛି ଶୁଭସ୍ୟ ଶିଘ୍ରଂ। ଟଙ୍କାଟା ନେଇ ଏଇ ସଙ୍ଗେ ସଙ୍ଗେ କମ୍ପାନୀ ଅଫିସକୁ ଚାଲିଗଲେ ଭଲ ହେବ । ଭିତରକୁ ଆସ ତ।

(ଗୋପୀ ଚାଲିଯାଏ। ମାଧବୀ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହେ। ମଞ୍ଚ ଅନ୍ଧକାର ହୁଏ)।

❖❖❖

## ଦୃଶ୍ୟ - ୪

### - ଅଫିସ୍ କୋନ୍ -

**ସମୟ - ସକାଳ**

(ବସିଛନ୍ତି ସାମନ୍ତ - ଗୋଟିଏ ଚିଠି ଉପରେ ଦସ୍ତଖତ କରୁଛନ୍ତି ପାଖରେ ଠିଆ ହୋଇଛନ୍ତି ଧନେଶ୍ୱର)

ସାମନ୍ତ — ଦେଖନ୍ତୁ ଧନେଶ୍ୱର ବାବୁ ବିବେକ ବିରୁଦ୍ଧରେ କାର୍ଯ୍ୟ କରିବା ଏଇ ପ୍ରଥମ। ମୁଁ ଅନେକ ବର୍ଷ ବାହାର ଷ୍ଟେଟ୍‌ରେ କାମ କରି ଆସିଛି। କିନ୍ତୁ କେବେ କେଉଁଠି ଆମ୍ କଂପାନୀ ଉପରେ ପଲିଟିକାଲ୍ ପ୍ରେସର ପଡ଼ିବାର କଥା ଶୁଣିନି।

ଧନେଶ୍ୱର — ବାହାର ଷ୍ଟେଟ୍ ଆମ କମ୍ପାନୀ ଉପରେ ନିର୍ଭର କରେନି ସାର୍। ଏଠି କିନ୍ତୁ ଆମ ସେଲର ଏଇଟି ପରସେଣ୍ଟ୍ ଯେତେବେଳେ ସରକାର ଗ୍ରହଣ କରୁଛନ୍ତି କମ୍ପାନୀର ହିତ ଦୃଷ୍ଟିରୁ ତାଙ୍କୁ ଖୁସି କରିବାକୁ ହବ ସାର୍।

ସାମନ୍ତ — ଏଥିରେ କିନ୍ତୁ ଗୋଟିଏ ନିରୀହ ବେକାର ପ୍ରତି ଅବିଚାର ହେଲା-ହଉ ଦିଅନ୍ତୁ।

(ଚିଠିରେ ସ୍ୱାକ୍ଷର କଲେ)।

(ବାହାରୁ ଗୋଟିଏ ଟ୍ରେରେ ପାଣି ଆଣି ଭୋଳା ରଖିଲା, ଟେବୁଲ ଉପରେ)

ସାମନ୍ତ — (ଧନେଶ୍ୱରଙ୍କୁ) ଆଜି ଆପଣ ଅର୍ଡରଟି ଇସ୍ୟୁ କରି ଦିଅନ୍ତୁ ଆଉ

ଦେଖନ୍ତୁ ସିଏ ଯାହାର ରିଲେସନ ହେଉନା କାହିଁକି ଏଠି ପଲଟିକ୍ସ୍ ନ କରି ଯେମିତି ରୀତିମତ କାମ କରୁ। He should be out and out dulyful. (ଚ଼ାଲିଯାଉଛନ୍ତି ଭୋଳା ସାଲ୍ୟୁଟ୍ ମାରିଛି ଏବଂ ଫେରିଆସି)

ସାମନ୍ତ ସେଇ ଫାଇଲ୍ ଗୁଡ଼ାକ ଭୋଳା ହାତରେ ରେସକୁ ପଠେଇ ଦିଅନ୍ତୁ। (ଚ଼ାଲିଗଲେ - ଭୋଳା ପୁଣି ସାଲ୍ୟୁଟ୍ ମାରିଛି )

(ଧନେଶ୍ୱର ବାବୁ ହସ ହସ ମନରେ କାମ କରି ଚ଼ାଲିଛନ୍ତି- ଭୋଳା ଯାଇ ଟୁଲରେ ବସିଛି । ବାହାରୁ ଆସିଛି ଗୋପୀ।)

ଭୋଳା ନମସ୍କାର ବାବୁ। ଆଜି ନିଶ୍ଚୟ ମିଠେଇ ଖୋଇବେ।

ଗୋପୀ କାହିଁକି ?

ଭୋଳା ଏଇନେ ବଳେ ବୁଝିଯିବେନି। କାଲିଠୁ ପରା ଆପଣଙ୍କର ଅର୍ଡର ଧନେଶ୍ୱର ବାବୁ ଟାଇପ କରି ରେଡି କରିଥିଲେ। ସାହେବ ଏଇନା ଦସ୍ତଖତ କରି ଚ଼ାଲିଗଲେ।

ଧନେଶ୍ୱର ଭୋଳା।

ଭୋଳା ସାର୍।

ଧନେଶ୍ୱର ଫାଇଲ୍ ଗୁଡ଼ାକ ନେଇ ଯିବାକୁ ସାହେବ କହିଲେ ପରା।

ଭୋଳା ସାଙ୍ଗେ ସାଙ୍ଗେ ନେଇଯାଉଛି ସାର୍। (ଯାଇ ଫାଇଲ୍ ବାନ୍ଧିବାରେ ଲାଗିଛି)

ଗୋପୀ (ଧନେଶ୍ୱରଙ୍କୁ) ସାର୍ ନମସ୍କାର।

ଭୋଳା (ଚ଼ୌକି ଦେଖାଇ) ଏଇଠି ବସନ୍ତୁ ବାବୁ। ହାତେ ହାତେ ଅର୍ଡରଟା ନେଇଯିବେ ଯେ ଭଲହେବ।

ଧନେଶ୍ୱର ତୁ ସାହେବଙ୍କ ଘରକୁ ଯା ଭୋଳା।

ଭୋଳା ମୋତେ କାହିଁ ବିଗୁଡୁଛନ୍ତି କହିଲେ ସାର୍। ମୁଁ ଏଇନା ଚ଼ାଲିଯିବିନି କି। ଏଇବାବୁ ଆମରି ସାଇରେ ମାଷ୍ଟରବାବୁ ଘରେ ଭଡ଼ାରହନ୍ତି ଆଜ୍ଞା। ବହୁତ ବଢ଼ିଆ ମଣିଷ । ଧାଇଁ ଧାଇଁ ଗୋଡ଼ରୁ ପାଣି ମରିଯାଇଛି।

| | |
|---|---|
| | ଏତେଦିନ ପରେ ଭଗବାନ ମନକଥା ବୁଝିଛନ୍ତି। ଆପଣ ଅର୍ଡରଟା ଦେଇଦିଅନ୍ତୁ। ତାଙ୍କରି ମୁହଁରେ ଟିକିଏ ହସଦେଖି ଚାଲିଯିବି। |
| ଧନେଶ୍ୱର | ଭୋଳାନାଥ। |
| ଭୋଳା | ହଉ ଯାଉଛି ସାର୍ (ଫାଇଲ୍ ଧରି ଯାଉ ଯାଉ)।<br>ମୋ ପାଇଁ କିନ୍ତୁ ଗୋଟେ କେଜି ରସଗୋଲା ରଖିଥିବେ ସାର୍। |
| ଗୋପୀ | ଆପଣଙ୍କ କହିବା ମୁତାବକ ଟଙ୍କାଟା ନେଇ ଆସିଛି ସାର୍। (ପକେଟରୁ କାଢ଼ି ଟେବୁଲ୍ ଉପରେ ରଖିଛି) |
| ଧନେଶ୍ୱର | ଆଉ ସେ ସବୁର ଦରକାର ନାହିଁ ଗୋପୀବାବୁ। ମୁଁ ଆପଣଙ୍କୁ ସାହାଯ୍ୟ କରିପାରୁ ନ ଥିବାରୁ ବଡ଼ ଦୁଃଖିତ। |
| ଗୋପୀ | ମାନେ ? |
| ଧନେଶ୍ୱର | ସେଇ ପୋଷ୍ଟରେ ଅନ୍ୟଜଣେ Appointment ହୋଇ ଯାଇଛି। ରାଜଧାନୀରୁ ଗୋଟେ ଫୋନ୍ ପାଇ ସାମନ୍ତ ସାହେବ କମ୍ପାନୀର ହିତ ଦୃଷ୍ଟିରୁ ଏଇ ଅର୍ଡରଟା କରିବାକୁ ବାଧ୍ୟ ହୋଇଛନ୍ତି। ଦେଖନ୍ତୁ। (ଧନେଶ୍ୱର ଅର୍ଡରଟି ବଢ଼େଇ ଦେଇଛନ୍ତି) |
| ଗୋପୀ | (ଅର୍ଡରଟିକୁ ଚାହିଁ ରହେ। ଅର୍ଡରର ପ୍ରଥମ କେତେକ ଧାଡି ମି.ସାମନ୍ତଙ୍କ କଣ୍ଠରେ ଶୁଣାଯାଏ।) |
| ମି.ସାମନ୍ତ | (କଣ୍ଠସ୍ୱର) Mr. Paresh Prasad Parija. The company has been pleased to appoint you as stores Asst in the scale of pay |

(ସାମନ୍ତଙ୍କ କଣ୍ଠର ଏଇ ସଂଳାପଟି ବାରମ୍ବାର ପ୍ରତିଧ୍ୱନିତ ହେବା ସଙ୍ଗେ ସଙ୍ଗେ ଗୋପୀ ମୁହଁରେ ସମସ୍ତ ଆଲୋକ କେନ୍ଦ୍ରିତ ହୁଏ। ସେ ସଂବିତ ହରାଇ ପଡିଯିବା ଅବସ୍ଥାରେ ଧନେଶ୍ୱର ସଂଭାଳି ନିଅନ୍ତି। )



# ଦୃଶ୍ୟ - ୫

(ଗୋପୀର ଘର)

(ଗୋପୀ ଖଟ ଉପରେ ବସି ରହିଛି, ମାଧବୀ ପାଖରେ ଠିଆ ହୋଇଛି)

ମାଧବୀ — ଯେମିତି ହେଲେବି ତମକୁ ଏହାର ପ୍ରତିବାଦ କରିବାକୁ ପଡିବ। ସବୁବେଳେ ଅନ୍ୟାୟକୁ ମାନି ନେବା ମାନେ ଅନ୍ୟାୟକୁ ପ୍ରଶୟ ଦେବା

ଗୋପୀ — ଯାହା କଲେବି ସେମାନଙ୍କର ଦଳ ଏତେ ମଜଭୁତ ଯେ ଅମେ ତାଙ୍କର କିଛି କରିପାରିବାନି । ତା ଛଡା ଏଥିରେ ଆମର ଲାଭ କ'ଣ?

ମାଧବୀ — ଲାଭକ୍ଷତିର ହିସାବ କରି କରି ତୁମର ଆଜି ଏଇ ଅବସ୍ଥା । ଇନ୍ଭରସିଟର ପ୍ରଥମ ଶ୍ରେଣୀ ଡିଗ୍ରୀ ପାଇବି ତୁମେ ଆଜି ବେକାର। ଥରକପାଇଁ ଯାଇ ଆପତ୍ତି କରିପାରିବନି ।

ଗୋପୀ — ନାଁ ମାଧବୀ, ଦୁର୍ନିତିର ଏଇ ପ୍ରଖର ସୁଅ ମୁହଁରେ ଆମେ କେବେ ଠିଆ ହେଇ ପାରିବନି, ତୁମେ ମୋତେ ବାଧ୍ୟ କରନି ।

ମାଧବୀ — ମୋ ମତରେ କିନ୍ତୁ କଡଉଳି ସବୁଅତ୍ୟାଚାରକୁ ମାନି ନେଇ ବଞ୍ଚବା ଅପେକ୍ଷା ସୁଅ ମୁହଁରେ ପତ୍ର ହୋଇ ଭାସି ନିଶ୍ଚିହ୍ନ ହୋଇ ଯିବାରେ ଅଧିକ ଗୌରବ ଅଛି । ଅତତଃ ଥରଟିଏ ଯାଇ ସେଇ ଅଫିସରଙ୍କୁ ଦେଖାକରି କୁହ ।

ଗୋପୀ — ଆମ ପାଖରେ ଯେତେବେଳେ କୌଣସି ପ୍ରମାଣ ନାହିଁ,କି କୋଟ କଚେରି ଯିବାକୁ ସଂବଳ ନାହିଁ, ଖାଲି ଏଇ କଥା ଉପରେ କିଛି ହୋଇ ପାରିବ ବୋଲି ଭାବୁଛ ।

ମାଷ୍ଟର — (ଆସିଛନ୍ତି) ଏଇ କଥା ଉପରେ ବିପ୍ଳବ ଜଳି ଉଠୁଛି ଗୋପିନାଥ

ଏଇ କଥା ଉପରେ ଦେଶ ଭାଗ ଭାଗ ହେଇ ଯାଉଛି। ମା ମାଧବୀର କଥା ରଖି ତୁମକୁ କିଛି ନା କିଛି କରିବାକୁ ପଡିବ । କିଛି ନ ହେଲେ ତୁମ ପ୍ରତି ଅନ୍ୟାୟ ହେଇଛି ପାଞ୍ଚ ଜଣତ ଏକଥା ଜାଣିପାରି ବେ।

ଗୋପୀ ନା କାକା, ମୋତେ ସେମିତି ମଧ୍ୟ କରନ୍ତୁ ନି। ମୁଁ ସେସବୁକୁ ପାରିବିନି।

ମାଷ୍ଟର ତମେ କିଛି କହିବନି କି କିଛି ପାରିବନି-ଅଥଚ ଏଇ ସହରି ଜୀବନ ଘୋଡା ଦୌଡରେ କାହିଁକି ମିଛରେ ଯୋଗ ଦେଇଚ। ବରଂ ଯାଇ ଅନ୍ୟକିଛି ଧନ୍ଦା କର ।

ଗୋପୀ ସେଇ କଥା ଚିନ୍ତା କରୁଛି କାକା, ଭାବୁଛି ଗାଁକୁ ଫେରିଯିବି।

ମାଧବୀ ତୁମେ ଗାଁକୁ ଯାଇପାର ହେଲେ ଯଉଠୁ ମୁଁ ଥରେ ଗୋଡ କାଢି ଆସିଛି ଆଉ ସେଠିକି ଫେରି ପାରିବିନି।

ଗୋପୀ (ଖାଲି ଚାହିଁଛି) ବେଶ ତମେ ଯଉଟା ଠିକ ଭାବୁଛ ସେଇଟା କର ମୋର କିଛି କହିବାର ନାହିଁ ।

(ଗୋପୀ ତମ ତମ ହୋଇ ବାହାରକୁ ଚାଲି ଯାଇଛି। ମାଧବୀ ସେଇ ଆଡକୁ ଚାହିଁ ରହିଛି ଆଖିରେ ତାର ଲୁହ ଆସିଛି)

ମାଷ୍ଟର୍ ତୁ ଗୋପୀକଥା କିଛି ଭାବନା ମା. ସେ ନ କଲେ ନାହିଁ, ଆମକୁ ଯ୍ୱର ଗୋଟେ ସମାଧାନ ଖୋଜି ବାହାର କରିବାକୁ ପଡିବ। (ବାହାରେ ପରେଶର ପାଟି ଶୁଣାଯାଇଛି)

ପରେଶ (ଭିତରୁ) ସାର ଘରେ ଅଛନ୍ତି?

ମାଷ୍ଟର କିଏ? (ମାଧବୀ ଭିତରକୁ ଚାଲି ଯାଇଛି ପରେଶ ଆସିଛି )

ମାଷ୍ଟର କାହାକୁ ଖୋଜୁଛ ବାପା।

ପରେଷ (ପାଦଧୂଳି ନେଇଛି)

ମାଷ୍ଟର ତୁମେ କିଏ ବାପା, ମୁଁ ତ ଠିକ ଚିହ୍ନି ପାରୁନି।

ପରେଶ ମୋତେ ଆପଣ ଚିହ୍ନି ପାରୁନାନ୍ତି ସାର। ଆପଣଙ୍କର କ୍ଲାସର ପଛବେଞ୍ଚରେ ଷ୍ଟୁଡେଣ୍ଟ ଟ୍ରିପଲ୍-ପି!

ମାଷ୍ଟର — ଟ୍ରିପଲ ପି :- ?

ପରେଶ — ପି:ପି:ପି: ଓରଫ ପରେଶ ପ୍ରସାଦ ପରିଜା ସାର୍

ମାଷ୍ଟର — ଆରେ ତମେ ସେଇ ପରେଶ । ହେଡ ମାଷ୍ଟରଙ୍କ କାର୍ଯ୍ୟ କଳାପକୁ ପ୍ରତିବାଦ କରିବାରୁ ତମକୁ ରସଟିକେଟ କରାଯାଇ ନଥିଲା ନା ?

ପରେଶ — ହଁ ସାର ଯାହାପାଇଁ ଆପଣ ହେଡ ମାଷ୍ଟ୍ରଙ୍କୁ ଭିଷଣ ପ୍ରତିବାଦ କରିଥିଲେ ଆଉ ଶେଷରେ ଚାକିରୀରୁ ରିଜାଇନ୍ ଦେବାକୁ ପଛେଇ ନଥିଲେ । ମୁଁ ସେଇ ପରେଶ୍ । ଦଣ୍ଡା ବାଳୁଙ୍ଗା କହି ସମସ୍ତେ ଯେତେବେଳେ ଦୂରେଇ ଦେଇଥିଲେ, ଆପଣ ଏକା ମୋତେ ଆଶ୍ୱାସନା ଦେଇ ପାଖକୁ ଟାଣି ନେଇଥିଲେ। ସେ କଥା ମୁଁ କେବେ ଭୁଲି ପାରିବିନି।

ମାଷ୍ଟର — ଯାହା ହଉ ଅନେକ ଦିନ ପରେ ତୁମ ସହିତ ଦେଖା ହେଲା । ବହୁତ ଖୁସି ଲାଗୁଛି । ହେଲେ ମୁଁ ହଠାତ୍ କେମିତି ମନେ ପଡିଗଲି ବାପା ।

ପରେଶ — ସ୍କୁଲରୁ ତଡାଖାଇ ବାହାରି ଆସିଲା ପରେ ବାପାଙ୍କ ପାଖରୁ ଭୀଷଣ ମାଡ ଖାଇ ଘର ଛାଡି ଅନେକ ଘୁରି ବୁଲିଲି ସାର। ଫୁଟ ପାଥରେ ବଡି ମଣିଷ ହେଲି । ଏଇ କେତେ ବର୍ଷ ଭିତରେ ଆପଣଙ୍କୁ ଅନେକ ଖୋଜି ବି ପାଇ ନ ଥିଲି ସାର। ଆଜି ହଠାତ୍ ରାସ୍ତାରେ ଦେଖି ଚାଲି ଆସିଲି ।

ମାଷ୍ଟର — ବହୁତ ଭଲ କଲ ପରେଶ। ଚାକିରୀ ଛାଡି ଦେଲାପରେ ମୁଁ ସେଇଠୁ ଚାଲି ଆସିଲି । ତମେ ଆସି ଦେଖାକଲ ମୋ ପୁରୁଣା ଦିନର ସ୍ମୃତିକୁ ପୁଣି ମନେ ପକେଇ ଦେଲ । ହେଲେ ତମେ ଏ ସହରରେ କେମିତି ?

ପରେଶ — ଏଠିକି କିଛି ଦିନ ପାଇଁ ଗୋଟେ କାମରେ ଆସିଛି ସାର ।

ମାଷ୍ଟର — କୌଣସି ଚାକିରୀ ଆଶାରେ ?

ପରେଶ — ଆପଣଙ୍କ ଦୟାରୁ ଅନେକ ଚାକିରୀ କରିବାର ସୁଯୋଗ ମୋତେ ମିଳିଛି ସାର୍ । ମା ଚଣ୍ଡୀ ଭୋଜନାଳୟ ମ୍ୟାନେଜର ଠୁ ଆରମ୍ଭ କରି State Govt, central Govt ପର୍ଯ୍ୟନ୍ତ ଅନେକ ଚାକିରୀ କରିଛି ଆଉ ଛାଡି ଦେଇଛି ମଧ୍ୟ।

ମାଷ୍ଟର — ଏଇ ଚାକିରୀ ମହଙ୍ଗ କାଳରେ ତମକୁ ଏତେ ଚାକିରୀ ମିଳୁଛି କେମିତି ?

ପରେଶ　　ଏ ଯୁଗରେ ଚାକିରୀ ମିଳେନି ସାର ଯୋଗାଡ କରିବାକୁ ପଡେ

ମାଷ୍ଟର　　ସେଇଥି ପାଇଁ କହୁଛି । ଭଲ ଭଲ ସ୍କୋଲାର ମାନେ ଯେତେବେଳେ ଚାକିରୀ ନ ପାଇ ଘୁରୀ ବୁଲୁଛନ୍ତି ତମ ପାଇଁ ଏତେ ସଂଭବ ହେଉଛି କେମିତି?

ପରେଶ　　ସେଇଟା କେବଳ ଆପଣଙ୍କ ଯୋଗୁଁ ସାର୍ । ଆପଣଙ୍କର ସେଇ ଉପଦେଶ, ଜୀବନରେ Risk ନେଇ ଶିଖ । ଯିଏ ଯେମିତି ବ୍ୟବହାର୍ କରୁଛି ତାକୁ ସେମିତି ବ୍ୟବହାର୍ କର। Tit for tat.

ମାଷ୍ଟର　　Tit for tat ? (ହସି ଉଠିଛନ୍ତି ) Right.

ପରେଶ　　ସତରେ ହେଉବା ମିଛରେ ହେଉ ଏଇ ସୁତ୍ରଟିକୁ ମୁଁ କପାମାଳୀ କରି ଫୁଟପାଥରୁ ଉଠି ଆଜି ଠିଆ ହେଇ ପାରିଛି ସାର । ଏଇ ଫରମୁଲା ବଳରେ ପ୍ରାୟ୍ Eighty percent କାମରେ ସକ୍‌ସେସ୍ ଫୁଲ ହୋଇ ଯାଉଛି ସାର।

ମାଷ୍ଟର　　(ହସି) ଏଇ ଫରମୁଲା ଉପରେ ତୁମେ ରିତିମତ ଗୋଟେ Experiment ଚଳେଇଛ ଦେଖୁଛି ।

ପରେଶ　　ବିଶ୍ୱାସ କରନ୍ତୁ ସାର ଏଇ Success ପଛରେ ଗୋଟେ ଜବରଦସ୍ତ ସାଇଣ୍ଟିଫିକ୍ ରିଜିନ୍ ବି ବାହାର କରିଦେଇଛି।

ମାଷ୍ଟର　　ଆଚ୍ଛା....।

ପରେଶ　　ଏଇ ଦୁନିଆରେ Nintynine ପରସେଣ୍ଟରୁ ଅଧିକ ଲୋକ କରପ୍‌ଟ ସାର୍। କିଏ ଘରେ ତ କିଏ ବାହାରେ - କିଏ ଅଫିସରେ ତ କିଏ ରାଜନିତୀରେ। ଏମିତି କାୟ୍ ମନ ବାକ୍ୟରେ କଉଠିନା କଉଠି ଜାଣତରେ ଅଜାଣତରେ ସମସ୍ତେ ଭୁଲ କରିବସୁଛନ୍ତି। ଆଉ ସେଇ ମାନଙ୍କୁ ସାମାନ୍ୟ ସାହାସ ରଖି ତାଙ୍କ ଭୁଲଟି ଦେଖେଇ ଦେଲେ--- ବାସ ତମର ବାଜିମାତ--- ସାର୍।

(ମାଷ୍ଟର ଓ ପରେଶ ହୋ ହୋ ହୋଇ ହସି ଉଠିଛନ୍ତି। ପଶିଆସିଛି ମାଧବୀ.... ଓ ପରେଶକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇଛି।)

ମାଷ୍ଟର　　Yes, you are correct. Every body is honest till he is not cought.

| | |
|---|---|
| ମାଧବୀ | ପରେଶ ଭାଇ ତୁମେ ଏଠି କେମିତି? |
| ପରେଶ | ମୁଁ ତ ସେଇ କଥା ଭାବୁଛି । ତୁ ଏଠି କେମିତି ? |
| ମାଷ୍ଟର | ଆରେ ତୁମ ଦୁଇ କଣଙ୍କର ଆଗରୁ ପରିଚୟ ଅଛି ନା କଣ । |
| ପରେଶ | ଅନେକ ଦିନରୁ ସାର୍। ହେଲେ ଆପଣଙ୍କ ଘରେ ମାଧବୀ କେମିତି, ମୁଁତ କିଛି ଜାଣିପାରୁନି। |
| ମାଷ୍ଟର | ବାପା ତାର ଚାଲିଗଲା ପରେ ଗାଁ ଛାଡି ଏଠିକି ଚାଲି ଆସିଛି । |
| ପରେଶ | କିନ୍ତୁ କାହିଁକି ? |
| ମାଧବୀ | ଏଠି ଗୋଟେ ଚାକିରୀ ଖୋଜୁଛି। |
| ପରେଶ | ପାଇ ଗଲୁଣୀ ନା? |
| ମାଧବୀ | ନାଁ : କିନ୍ତୁ ତୁମ କଥା କହିଲନି ଯେ। |
| ପରେଶ | ମୁଁ ବି ଏଠି ସେଇ ଚାକିରୀ ଆଶାରେ ବୁଲୁଛି। |
| ମାଧବୀ | ବାହାରେ କଉଠି ଗୋଟେ ଚାକିରୀ କରୁଥିଲ ବୋଲି ଶୁଣିଥିଲି। ସେଇଟା କଣ ଛାଡିଦେଲ? |
| ପରେଶ | ନାଁ ଆପେ ଆପେ ଛାଡି ହେଇଗଲା। |
| ମାଷ୍ଟର | (ହସି ଉଠିଛନ୍ତି) ଏଇ ପାଇବା ଆଉ ଛାଡିବା ଉପରେ ତାର ଗୋଟେ ସ୍ୱତନ୍ତ୍ର ଥିଓରି ଥିବ ମା, ତୁ ଶୁଣୁଥା ମୁଁ ଟିକିଏ ବାହାରୁ ଆସୁଛି । (ଚାଲିଗଲେ) |
| ମାଧବୀ | ତୁମେ ମୋ ପାଇଁ ଗୋଟେ ଚାକିରୀ ଯୋଗାଡ କରି ଦେଇ ପାରିବ ପରେଶ ଭାଇ । |
| ପରେଶ | ଆରେ ଗୋଟେ କାହିଁକି - ଦଶଟା କହିଲେ ଯୋଗାଡ କରି ଦେଇ ପାରିବି। ହେଲେ ତୁ କ'ଣ ସତରେ ଏଇ ଚାକିରୀ ଆଶାରେ ଘର ଛାଡି ଦେଇଛୁ। |
| ମାଧବୀ | ନାଁ। |
| ପରେଶ | ତେବେ ! |
| ମାଧବୀ | ବର୍ତ୍ତମାନ କିନ୍ତୁ ମୋର ଚାକିରୀ କରିବା ମୋର ନିହାତି ଦରକାର। |
| ପରେଶ | କିନ୍ତୁ କାହିଁକୀ? |
| ମାଧବୀ | ଭିତରକୁ ଆସ ତମ ପାଇଁ ଚା କରିବି ଆଉ ସେଠି ସବୁ କଥା ଶୁଣେଇବି ...। |



## ଦୃଶ୍ୟ - ୬

(ଅଫିସ)

(ବାହାରୁ କଥା ହୋଇ ଆସୁଛନ୍ତି ମି.ସାମନ୍ତ,ପରେଶ)

ସାମନ୍ତ ସେ ସବୁ କଥା ଛାଡନ୍ତୁ । ଯାହା ଅସୁବିଧା ହେଉଛି ସେ ସବୁ ଧନେଶ୍ୱର ବାବୁଙ୍କୁ କୁହନ୍ତୁ । ସେ ଏଠିକାର ପୁରୁଣା ଲୋକ । ସେ ଟାଙ୍କ ଲେବେଲ୍‌ରେ ସମାଧାନ କରିପାରିବ।

ପରେଶ ଟାଙ୍କୁ ତ ସବୁ କଥା କହି ହେବନି ସାର।

ସାମନ୍ତ What ? କଂପାନୀର ସେ କଣେ Responsible ଲୋକ ଟାଙ୍କୁ କହିହେବନି?

ପରେଶ ଏମିତି କେତେଗୁଡିଏ ଡିଫିକଲ୍‌ଟିକ ହେଉଛି ସେଇଟା ଆପଣଙ୍କର ପରସନାଲ ନକରକୁ ନ ଆଣିଲେ ପଛରେ ମୁଁ ଦୋଷୀ ହେଇ ଯିବି ସାର।

ସାମନ୍ତ ହେଲା', ସେଇଟା ମୋତେ ଅଫିସରେ କହିପାରିବେ। ସେଇଥିପାଇଁ ମୋ ଘରକୁ ଯାଇ ଘଣ୍ଟା ଘଣ୍ଟା ଅପେକ୍ଷା କରିବାରେ କ'ଣ ଅଛି ।

ପରେଶ ସବୁ ଅଛି ସାର। ଆପଣଙ୍କୁ ଖୁସି କରାଇ ପାରିଲେ ସେଇଟା ମୋ ପାଇଁ ଯଥେଷ୍ଟ ହବ ସାର।

ସାମନ୍ତ କ'ଣ ଯେ ଆପଣ କହୁଛନ୍ତି । ମୋ ଘରକୁ ଯାଇ ଖୁସି କରେଇବା ଅପେକ୍ଷା ଏଠି ଅଫିସରେ ବସି କାମ କରନ୍ତୁ । ଆମକୁ ଆମର ପରିବାର ଚଳାଇବାର ସୁଯୋଗ ଦେଇ ନିଜେ ନିଜର ସଂସାର ଦେଖନ୍ତୁ ସେଇଥିରେ ବଂର ଅଧିକ ଖୁସି ହେବି।

| | |
|---|---|
| ପରେଶ | ଅଫିସ କାମଟାକୁ ମୁଁ ସଂସାର ଠାରୁ ଅଧିକା ମନେ କରେ ସାର ରାତିରେ ଶୋଇ ଶୋଇ ବି ମୁଁ ଅଫିସଟାକୁ ସ୍ୱପ୍ନ ଦେଖେ ତା ଭିତରେ ଆପଣଙ୍କୁ ବି କେତେଥର ଦେଖି ପକାଏ ସାର୍। |
| ସାମନ୍ତ | ଆପଣ ମୋତେ ସ୍ୱପ୍ନ ଦେଖନ୍ତି ? |
| ପରେଶ | ହଁ ସାର୍ କୋଉଦିନ ଦେଖେ ତ ଫାଇଲ ଗୁଡା ଖଣ୍ଡ ଖଣ୍ଡ ମେଘ ହୋଇ ଏ ଦେଶର ଆକାଶକୁ ବିଛେଇ ପକଉଛନ୍ତି। ଆଉ କଉ ଦିନ ଦେଖେତ ବୁଭୁକ୍ଷୁ ଜନତା ଗଦା ଗଦା ଫାଇଲ ଆଣି ମୋ ଉପରେ ଲଦି ଦେଉଛନ୍ତି । ଆଉ ଆପଣ ଗୋଟିଏ ବର୍ଚ୍ଛା ମାର୍କା କଲମ ଧରି ସେ ସବୁକୁ କ୍ଲିୟର୍ କରି ମୋତେ ନାଲି ଫିତା ତଳୁ ଉଦ୍ଧାର କରୁଛନ୍ତି। |
| ସାମନ୍ତ | ସଟଅପ୍ ! ସେ ବାଜେ କଥା ଛାଡନ୍ତୁ । |
| | (ଧନେଶ୍ୱର ବାବୁ ଆସିଛନ୍ତି) |
| ପରେଶ | ସାର୍। |
| ସାମନ୍ତ | ଧନେଶ୍ୱର ବାବୁ ପରେଶଙ୍କୁ ଯୋଉ ପୁରୁଣା ବର୍ଷର ଏକାଉଣ୍ଟସ ଷ୍ଟେଟମେଣ୍ଟ କରିବାକୁ ଦିଆଯାଇଥିଲା ତାକୁ ଦେଖିଛନ୍ତି। |
| ପରେଶ | ସେ ଅନେକ ଥର ଦେଖିଛନ୍ତି ସାର୍। |
| ସାମନ୍ତ | ଓଃ ଆପଣଙ୍କୁ ନୁହେଁ ତାଙ୍କୁ ପଚାରୁଛି। |
| ଧନୀ | ଦେଖିଛି ସାର ଦୁଇମାସ ସମୟ ନେଇ ସେ ଯାହା କରିଛନ୍ତି ସେ ଗୁଡାକର ଆଗପଛ ନାହିଁ । କୌଣସି ଫିଗର ବା ଏକାଉଣ୍ଟସ୍ ରିଫିଲେକ୍ଟ କରୁନି। |
| ପରେଶ | ମାନେ ? ମାନେ ମୁଁ ଯେଉଁ ଷ୍ଟେଟମେଣ୍ଟ କରିଛି ସେଟା ଠିକ୍ ନୁହେଁ ? |
| ଧନେଶ୍ୱର | ନା, ୟାଙ୍କୁ ସ୍ୟାଡ଼ୁ ଲେଖି ଗୋଟେ ରଚନା ଖାତା କରିଛନ୍ତି ସିନା ସେ ଷ୍ଟେଟମେଣ୍ଟ ନୁହେଁ । |
| ସାମନ୍ତ | ଆପଣ ଏ ବିଷୟରେ ତାଙ୍କୁ ମୂଳରୁ କସନ କଲେନି କାହିଁକି ? |
| ଧନୀ | ଅନେକଥର କରିଛି ସାର । ହେଲେ ସେ ମୋ କଥା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି। |

| | |
|---|---|
| ସାମନ୍ତ | ଆପଣ ଏ ବିଷୟରେ ମୋତେ ଆଗରୁ ରିପୋର୍ଟ କରି ପାରିଥାନ୍ତେ |
| ଧନୀ | କରିଛି ସାର, ଫାଇଲରେ ନୋଟ ଦେଇ ଆପଣଙ୍କ ଘରକୁ ପଠାଇ ଦେଇଛି । ଆପଣ ବୋଧେ ଦେଖି ନାହାନ୍ତି ସାର। |
| ସାମନ୍ତ | ପରେଶ, ଧନେଶ୍ୱର ବାବୁ ଯାହା କହିଗଲେ ସେ ବିଷୟରେ କିଛି କହିବାର ଅଛି? |
| ପରେଶ | ସବୁ କଥାରେ ମୁଁ ଟିକେ ଡିଟେଲଡ୍ ଗୋଇଙ୍ଗ ସାର ସେଇଥିପାଇଁ ଷ୍ଟେଟମେଣ୍ଟ ଗୁଡାକ ମୋଟା ହୋଇଯାଇଛି ସାର। |
| ସାମନ୍ତ | ଡୋଣ୍ଟ ଟକ୍ ରବିଶ୍, କାମ ଯଦି ନ ଆସୁଛି ଧନେଶ୍ୱର ବାବୁଙ୍କୁ ଚାରି ଶିଖନ୍ତୁ। ଧନେଶ୍ୱର ବାବୁ ମୁଁ ଆପଣଙ୍କୁ ଏକ ମାସ ସମୟ ଦେଉଛି, ଯାଃ ଭିତରେ ପରେଶର କାମ ରିଭ୍ୟୁ କରି ମୋତେ ରିପୋଟ କରନ୍ତୁ। ତାପରେ ମୁଁ ଯାଇ ଭାବି ଦେଖିବି ଇଏ ଏଠି ଚାକିରୀରେ ରହିବେ ନା ଯିବେ।( ଚାଲିଗଲେ ) |
| ପରେଶ | ଆପଣ ମୋତେ ନକହି କେମିତି ରିପୋର୍ଟ କରିଦେଲେ ସାର। |
| ଧନେଶ୍ୱର | ( ହସି ) କ'ଣ ହୋଇଗଲା ସେଇଠୁ। କାମ ନ କରି ଫୁର୍ତ୍ତି କରି ବୁଲିବ.... ମୁଁ ଶେଷରେ ଆନସାରେବୁଲ୍ ହେବି। |
| ପରେଶ | ମୋ କାମ ମୁଁ କରିବି ଆପଣ କାହିଁକି ଆନସାରେବୁଲ୍ ହେବେ। |
| ଧନୀ | ଶୁଣିଲତ ସାହେବ କ'ଣ କହିଗଲେ । |
| ପରେଶ | ସେ ବାଜେ କଥା ଛାଡନ୍ତୁ । ମୋ ବିଷୟରେ ଆପଣ ସାରଙ୍କୁ ବାଏଷ୍ଟ କରିଛନ୍ତି। ଆପଣଙ୍କ ନାଁରେ Advance adjust ନ ହୋଇ ଗଡୁଛି। ସେଇଥଇପାଇଁ ମୁଁ account statement କରିପାରୁନି ବୋଲି ଜାଣନ୍ତି ? |
| ଧନୀ | ଜାଣିଛି, କିନ୍ତୁ ସେଗୁଡାକତ ମୁଁ ଖର୍ଚ୍ଚ କରେନି । ସାହେବଙ୍କ ନିର୍ଦ୍ଦେଶରେ ବିଭିନ୍ନ ଗେଷ୍ଟ ମାନଙ୍କ ପାଇଁ ଖର୍ଚ୍ଚ୍ ହେଇଛି । ସେ ଗୁଡାକ କେମିତି ଉଡେଇ ଦେଇ ହେବ ସେ କଥା ମୁଁ ଅନେକ ଥର କହିଛି । |
| ପରେଶ | ପଛରେ ଯେତେବେଳେ ମୋ ଉପରେ ଦାୟୀତ୍ୱ ଆସିବ ? ମୁଁ ସେଗୁଡାକ କରିପାରିବିନି। |

| | |
|---|---|
| ଧନୀ | ନ କରି ପାର । |
| ପରେଶ | ମାନେ- ଆପଣ କ'ଣ କହିବାକୁ ଚାହାନ୍ତି । |
| ଧନୀ | ମୁଁ ଯାହା କହୁଛି ସେଇଟା ତୁମେ ଭଲ ଭାବରେ ଜାଣ । ଆଉ ଶୁଣ, ତୁମ କାମ ଉପରେ ରିପୋର୍ଟ କରିବାକୁ ସାର ମତେ କହି ଯାଇଛନ୍ତି । ପୁଣି ସାତଦିନ ଭିତରେ ମୋତେ Report କରି ଦେବାକୁ ହେବ । |
| ପରେଶ | ତା ମାନେ ଆପଣ ଭାବୁଛନ୍ତି ମୋ ଚାକେରିଟା ଆପଣଙ୍କ ହାତରେ । |
| ଧନୀ | ଚାକିରୀଟୀ ପାଇବା ଦିନ ତମେ ଭଲ ଭାବରେ ଜାଣିଛ ଚାକିରୀଟା କାହା ହାତରେ । ମୋତେ ପଚାରିବାଟା ଅନାବଶ୍ୟକ । ଯାଅ ମତେ ଆଉ Disturb କରନି । |
| ପରେଶ | (ମନେ ମନେ ରାଗି ଚାଲିଗଲା) |
| ଧନୀ | (ଫୋନ ରିଙ୍ଗ ହେଲା ଓ ସେ ଧରିଛି) ହ୍ୟାଲୋ...କିଏ ? ପୋଲିସ୍ ଅଫିସର ରମେଶ ? ହଁ......ମୁଁ କହୁଛି । ଆବେ ଶଳା ପୋଲିସ୍ ଚାକିରି ଛାଡି ଦେ .....କଣ କହିଲୁ ..... ମାଲ.... 36,26,36 ...... ଆଛା ଯୋଗାଡ କର । .....ହଉ କାଲି ମଟର ସାଇକେଲରେ । ଠିକ୍ ଅଛି .... । ମୁଁ ଯୋଗାଡ କରିବି ......ହଁ ...... ତୋ ଭାଗ 36,26,36 ....ବାକିଟା ମୋର । ଯୋନେକା ଇନ୍‌ତେକାମ ତୁହ୍ମାରା - ଔର ଖାନେ ପିନ୍ନେକା ମେରା । ...... ଓକେ । |



## ଦୃଶ୍ୟ - ୭

(ଗୋପୀ ଘର, ମାଷ୍ଟର ପରେଶ କଥା ହେଉଛନ୍ତି)

ମାଷ୍ଟର — ତୁମେ ଯାହା କହୁଛ ସତ ହୋଇପାରେ ପରେଶ, କିନ୍ତୁ ତୁମ ମ୍ୟାନେଜର ଭାଗ ନେଇ ନଥିବେ ବୋଲି ତାର କୌଣସି ପ୍ରମାଣ କଣ?

ପରେଶ — ପ୍ରଥମେ ପ୍ରଥମେ ମୁଁ ଏ କଥା ଭାବୁଥିଲି ସାର୍, କିନ୍ତୁ ସେ ଆପଏଣ୍ଟମେଣ୍ଟ ଫାଇଲ୍‌ଟା ଦେଖି ମୋ ଧାରଣା ବଦଳି ଯାଇଛି।

ମାଷ୍ଟର — ମାନେ?

ପରେଶ — ଗୋପୀ ବାବୁଙ୍କୁ ଆପଏଣ୍ଟମେଣ୍ଟ ଦେବାକୁ ମ୍ୟାନେଜର ପ୍ରଥମେ ଅର୍ଡର ଦେଇ ଦେଇଅଛନ୍ତି, କିନ୍ତୁ ପରେ ଧନେଶ୍ୱର ବାବୁ ବହୁତ ଚାଲାକ କରି ମୋଟୁ ଟଙ୍କାଟା ପକେଇ ମୋତେ ଚାକିରୀ ଦେଇଛନ୍ତି।

ମାଷ୍ଟର — ତମଠୁ ଟଙ୍କା ପକେଇ ଦେଇଛନ୍ତି ମାନେ, ତୁମେ କଣ ସତରେ ଟଙ୍କା ଦେଇଛ।

ପରେଶ — ହଁ ମ୍ୟାନେଜରଙ୍କ ନା କହି ଧନେଶ୍ୱର ବାବୁ ମୋ ଠାରୁ ତିରିଶି ହଜାର ଟଙ୍କା ନେଇଛନ୍ତି। ଆଉ ନିଜେ ଲୋକ ସେଟ୍ କରି ମନ୍ତ୍ରୀଙ୍କ ନାଁରେ ଫୋନ୍ କରିଛି।

ମାଷ୍ଟର — କିନ୍ତୁ ଗୋପୀ ଏ ସବୁ ଅଭିଯୋଗ କଲେ ସାମନ୍ତବାବୁ ବିଶ୍ୱାସ କରିବେ ବୋଲି ଭାବୁଛ?

| | |
|---|---|
| ପରେଶ | ନିଶ୍ଚୟ କରିବେ । ଗୋପୀ ବାବୁ ଥରେ ଯାଇ ଚେଷ୍ଟା କରନ୍ତୁ ମୁଁ ଭାବୁଛି । ସାମନ୍ତ ସାହେବ ନିଶ୍ଚୟ କନ୍‌ସିଡର କରିବେ । |
| ମାଷ୍ଟର | ତମର ଏଥିରେ କିଛି କ୍ଷତି ହେବନି ତ ପରେଶ୍ । ତମ ଚାକିରୀ ଉପରେ କିଛି ବିପଦ ଆସିବନି । |
| ପରେଶ | ନା, ଆପଣ ସେ ବିଷୟରେ ବ୍ୟସ୍ତ ହୁଅନ୍ତୁନି, ଧନେଶ୍ୱର ବାବୁ ମୋ ପଛରେ ଲାଗିଯାଇଛି । ମୋତେ ଏଠାରୁ ଟ୍ରାନ୍‌ସଫର କରିବାକୁ ବସିଛନ୍ତି । ମତେ କିନ୍ତୁ ସେ କଥା ବଳେଇ ଯିବନି । ଆପଣ ଗୋପୀ ବାବୁଙ୍କୁ କୁହନ୍ତୁ ମୁଁ ସାହାର୍ଯ୍ୟ କରିବି । |
| | (ମାଧବୀ ହାତରେ ଚା ଧରି ଆସିଛି) |
| ମାଧବୀ | ଯେତେ ଯାହାକଲେ ବି ତମ ଗୋପୀବାବୁ କିଛି କରିପାରିବେନି, ତମେ ବେକାର୍ ଚେଷ୍ଟା କରୁଛ । |
| ମାଷ୍ଟର | ନା ମା ତାକୁ ଯେମିତି ହେଲେ ସାମନ୍ତବାବୁଙ୍କୁ ଦେଖା କରିବାକୁ ପଡ଼ିବ । ସେ ଧନେଶ୍ୱର ଲୋକଟାକୁ ପଦାରେ ପକାଇବାକୁ ପଡ଼ିବ । |
| ମାଧବୀ | ନା କାକା, ତାଙ୍କୁ ଚିହ୍ନିବାକୁ ଆପଣଙ୍କର ଆହୁରି ବାକି ଅଛି । ମିଛରେ ଆପଣ ଏତେ ସ୍ୱପ୍ନ ଦେଖୁଛନ୍ତି । |
| ମାଷ୍ଟର | ନା ସେମିତି କହି ଆମେ ଅଟକି ଗଲେ ଆମକୁ ସାହାର୍ଯ୍ୟ କରିବାକୁ କେହି ଆସିଯିବେନି । ଜଣକ ଅନ୍ୟାୟ ବିଷୟରେ ଆମେ ଜାଣି ସାରିଲା ପରେ ଆମେ ତାକୁ ଅନ୍ୟମାନଙ୍କ ନଜରକୁ ଆଣିବା । ତୁ ମନା କରନି । ମୁଁ ତୋ ସହିତ ମିଷ୍ଟର ସାମନ୍ତଙ୍କ ପାଖକୁ ଯିବି । ଦେଖିବା କଣ ହେଉଛି । |
| ମାଧବୀ | ଠିକ୍ ଅଛି । ଆପଣ ଚା ଟା ନିଅନ୍ତୁ । |
| | (ମାଷ୍ଟର କାକା ଚା ନେଇଛନ୍ତି । ମଂଚ ଅନ୍ଧାର ହୋଇଛି । ) |



## ଦୃଶ୍ୟ - ୮

**ଅଫିସ କୋନ**

(ସମୟ ରାତ୍ରି, ଧନେଶ୍ୱର ଆଉ ପରେଶ ପି ଚାଲିଛନ୍ତି । ଟେବୁଲ ଉପରେ ମଦ ବୋତଲ)

ପରେଶ — ଭୋଳାଟା ଏ ପର୍ଯ୍ୟନ୍ତ ଫେରିଲାନି । ସେ ଯିବାର ପ୍ରାୟ ଘଣ୍ଟାଏ ହୋଇଗଲା ।

ଧନେଶ୍ୱର — ତାକୁ ଭାଙ୍ଗ ଖାଇବାକୁ ପଇସା ଦେଲେ କାହିଁକି । ସେଥିରୁ ଟେଳାଟେ ପକେଇ ଦେଇ ସେଠି ବସି ଯାଇଥିବ ।

(ବାହାରୁ ଆସିଛି ଭୋଳା-ହାତରେ ତାର ଗୋଟିଏ ଟିଫିନ୍ କ୍ୟାରିୟର । ଭାଙ୍ଗ ଖାଇଛି । ମୁହଁରେ ତାର ଗୀତର ସ୍ୱର)

ଭୋଳା — ଆସ କିଏ ସେ ଖାଇବ ହୋ, ରାଜା ଘର ଖାନା, ମୁଣ୍ଡା ମୁଣ୍ଡା ଦହି ପୁଣି ଖଣ୍ଡ ଖଣ୍ଡ ଛେନା, ଆସ କିଏ ସେ ଖାଇବ ହୋ।

(ଆସିଛି, ଟେବୁଲ ଉପରେ ଟିଫିନ କ୍ୟାରିୟର ଖୋଲୁଛି)

ଧନେଶ୍ୱର — ଭୋଳା, ଆରେ ସେମିତି କଣ ହେଉଛୁ । ଯା ସେ ଘରୁ ପ୍ଲେଟ ନେଇ ଆ, ଟେଳାଟେ ଭାଙ୍ଗ ପକାଇ ଦେଇ ଗୋଟେ ନବରଙ୍ଗ ଦେଖୁଛି.... । ଆରେ ପିଆଜେ କୁଆଡେ.... । ଏପଟେ ଷ୍ଟୋର ରୁମ ଆଲ୍‌ମିରାରେ ଅଛି..... ।

ଭୋଳା — (ହସି) ଭୁଲି ଯାଉଛି ସାର୍....... (ଚାଲି ଯାଇଛି.... ପୁଣି ଫେରି ଆସି) ସାର୍ ଟୋପିଟା ଛାଡି ଆସିଲି ସାର୍....... ।

| | |
|---|---|
| ପରେଶ | କଉଠି? |
| ଭୋଳା | ସେଇ ପଞ୍ଜାବି ଦୋକାନରେ ସାର୍। ସେଇଠୁ ମାଂସ ଆଣିଲା ବେଳେ....... ଟେବୁଲ ଉପରେ ରଖିଦେଇଛି ସାର୍। (ପୁଣି ସେଇ ଆଡକୁ ଯାଉଛି) |
| ଧନେଶ୍ୱର | ସେ ଘରୁ ପ୍ରଥମେ ପ୍ଲେଟ ଦେଇ ଯା ଭୋଳା....। (ଭୋଳା ପୁଣି ଫେରି ଆସିଛି ହଠାତ୍ ପରେଶ ତା କାନ୍ଧକୁ ଲକ୍ଷ କରିଛନ୍ତି ଏବଂ ଟୋପିଟା ଦେଖିଦେଇଛନ୍ତି) |
| ପରେଶ | ଭୋଳା..... ଏଠିକି ଆସ.........ସେଟା କଣ? (ଭୋଳା ବୁଲି ବୁଲି ଦେଖୁଛି) ଆବେ କାନ୍ଧକୁ ଚାହାଁ....। (ଭୋଳା ଟୋପିଟା ଦେଖି ହସି ଉଠିଛି) |
| ଧନେଶ୍ୱର | ଭାଙ୍ଗ ଖାଇ ଗୋଟେ ସିନ୍ କ୍ରିଏଟ୍ କରୁଛି। ପ୍ଲେଟ ଆଣିବା ଦରକାର ନାହିଁ। ସେଇଠି ଚୁପ ଚାପ ବସ। |
| ଭୋଳା | (ହସି ଚାଲିଛି) ଭୁଲ ହୋଇଯାଇଛି ସାର୍..... ଯାହା କୁହନ୍ତୁ ସାର୍ ପରେଶ ବାବୁ ଆମର ରାଜା ଲୋକ। ଆସ କିଏ ସେ ଖାଇବ ହୋ। |
| ଧନୀ | ସେଇଠି ଚୁପ ଚାପ ବସ, ଯା......। (ଭୋଳା ଯାଇ ବସିଛି)। |
| ପରେଶ | (ଖାଉ ଖାଉ) ଯାହା କହନ୍ତୁ ସାର୍ ଜୀବନ ସାର୍ ଆପଣଙ୍କର ଋଣୀ ହୋଇ ରହିଯିବି। |
| ଧନୀ | କାହିଁକି....? |
| ପରେଶ | ଆପଣଙ୍କୁ ଗୁରୁ ବୋଲି ମାନିବାକୁ ପଡିବ। ଏମିତି କାମ କଲେ ଯେ ସାପ ମଲା ଅଥଚ ବାଡି ଭାଙ୍ଗିଲାନି। |
| ଧନୀ | (ଇସାରାରେ ଚୁପ ରହିବାକୁ କହିଲେ) |
| ପରେଶ | ଭୋଳାନାଥ ପଇସା ପାଇଗଲା ତ? |
| ଭୋଳା | ଆଜ୍ଞା, ସବୁ ହୋଇଗଲା। |

| | |
|---|---|
| ପରେଶ | (ମଦକୁ ଦେଖେଇ) ଏଥିରୁ କିଛି ପଡୁ। |
| ଭୋଳା | (ନାକ ବନ୍ଦ କରି) ନାଁ ଆଜ୍ଞା ଚଳିବନି, ସିଏ ପରା ମୁଣ୍ଡଛୁଇଁ ରାଣ ଦେଇଛନ୍ତି। |
| ପରେଶ | (ହସି ଉଠିଛି ଭୋଳା ବି ହସି ଉଠିଛି) |
| ଧନୀ | ହସଟା ବନ୍ଦ କରିପାରୁନୁ ଭୋଳା। |
| ଭୋଳା | (ହସ ବନ୍ଦ କରିଛି) |
| ପରେଶ | ସାର, ଆପଣ ଯେମିତି ହେଲେ ମୋ ଟ୍ରାନ୍ସଫରଟାକୁ ବନ୍ଦ କରିବାକୁ ବହୁ ସାର। |
| ଧନୀ | ପ୍ରଥମେ ଆପଣ ସାହେବଙ୍କୁ କୁହନ୍ତୁ। ମୁଁ ସେ କଥା ଦେଖିବିନି। |
| ପରେଶ | ଆପଣ ରିପୋର୍ଟଟା ସିନା ଟିକିଏ ବାଗେଇକରି ଦେଇଥିଲେ ସାହେବଙ୍କୁ କହିବି। |
| ଧନୀ | କହିଲି ପରା ସେ କଥା ଦେଖିବି। ଆପଣ ସିନା ମୋତେ ଖରାପ ଭାବୁଛନ୍ତି, ଦେଖିବେନି.....। |
| ଭୋଳା | (ହଠାତ୍ କାନ୍ଦି ଉଠିଛି) |
| ଧନେଶ୍ୱର | ଭୋଳା! |
| ଭୋଳା | ଆଜ୍ଞା, ଏଇଟା..... |
| | (ଗୋଟେ ଟୁଲ ଉପରେ ବସି ଗୋଟେ ଗୋଡକୁ ଟେକି ଧରିଛି) |
| ଧନେଶ୍ୱର | କଣ ସେଇଟା? |
| ଭୋଳା | ଗୋଡ ସାର....ସ୍ପ୍ରିଙ୍ଗ.......। |
| ପରେଶ | ମାନେ......? (ଭୋଳା ଗୋଟିଏ ଗୋଡକୁ ଚାପିଧରେ। ସେ ଗୋଡଟି ସ୍ପ୍ରିଙ୍ଗ ପରି ଉପରକୁ ଉଠିଆସେ) |
| ଭୋଳା | ଗୋଡ.......ସ୍ପ୍ରିଙ୍ଗ....... ଗୋଡ......ସ୍ପ୍ରିଙ୍ଗ ସାର୍........। ଟିକିଏ ଠିକ୍ କରି ଦିଅନ୍ତୁ ସାର୍, ନହେଲେ ସିଏ ଆଉ ଘରେ ପୁରେଇବନି.....। ସାର୍.....। |

| | |
|---|---|
| ପରେଶ | (ଯାଇ ଭୋଳାର ଗୋଡକୁ ମାଡି ଧରିଛି ଏବଂ ଛାଡିଦେଇଛି ଗୋଡଟି ରହିଯାଇଛି) |
| ଭୋଳା | ଠିକ୍ ହୋଇଗଲା ସାର୍। |
| ପରେଶ | (ହସି ଉଠିଛି)। |
| ଧନୀ | ତା ସାଙ୍ଗରେ ଲାଗନ୍ତୁନି ପରେଶ ବାବୁ। ଆସନ୍ତୁ। |
| ଭୋଳା | (ପୁଣି କାନ୍ଦି ଉଠିଛି) |
| ଧନେଶ୍ୱର | ପୁଣି କଣ ହେଲା.....। |
| ଭୋଳା | ପୁଣି ସେଇ ସ୍ପ୍ରିଙ୍ଗ..... ସାର....ଗୋଡ ସ୍ପ୍ରିଙ୍ଗ.....।<br>(ପୁଣି ସେହିପରି ଗୋଡ ଉଠିଯାଉଛି) |
| ଧନେଶ୍ୱର | ରହ ତୋ ସ୍ପ୍ରିଙ୍ଗ ଛଡେଇ ଦଉଛି......।<br>(ଟେବୁଲ ଉପରୁ ରୋଲ ବାଡିଟି ଧରି ନେଇଛନ୍ତି)<br>କଉଟା ସ୍ପ୍ରିଙ୍ଗ ହଉଛି ଦେଖି.........। |
| ଭୋଳା | ଏଇ ବାଁଟା ଆଗ ହଉଥିଲା ସାର୍। ଏବେ ଏଇ ଡାହାଣଟା .....<br>ହେଇଟି ସ୍ପ୍ରିଙ୍ଗ.....। |

(ଧନେଶ୍ୱର ରୋଲବାଡିରେ ବାଡେଇ ଦେଇଛନ୍ତି, ଭୋଳା ମରିଗଲି ମରିଗଲି କହି ଚିତ୍କାର କରିଛି)



# ଦୃଶ୍ୟ - ୯

(ଗୋପୀର ଘର)

(ବାହାରେ ଗୋଟେ କାର ଅପେକ୍ଷା କରି ରହିଛି .....ସେଇ କାର ହର୍ଣ୍ଣ ବାରମ୍ବାର ଶୁଭୁଛି, ମାଧବୀ ହାତରେ ଗୋଟେ ଆଟାଚି ଧରି ବାହାରି ଆସିଛି, ପଛରୁ ଗୋପୀ ଡାକିଛି

ଗୋପୀ — ମାଧବୀ।

ମାଧବୀ — (ଅଟକି ଯାଇଛି)।

ଗୋପୀ — ଭାବ ପ୍ରବଣ ହେଇ ତୁମେ ଯାହା କରିବାକୁ ଯାଉଛ ସେଇଟା ଠିକ୍ କି ଭୁଲ ଥରେ ଚିନ୍ତା କରି ଦେଖିଛ।

ମାଧବୀ — ଠିକ୍ ଭୁଲ ପରୀକ୍ଷା କରି ଦେଖିବାର ସମୟ ମୋର ଚାଲି ଯାଇଛି। ତେଣୁ ମୁଁ ଯାହା କରୁଛି ଠିକ୍ କରୁଛି ବୋଲି ଭାବି ନେଇଛି।

ଗୋପୀ — ତମେ ଭାବୁଥାଇ ପାର କିନ୍ତୁ ଦୁନିଆ ଆଖିକୁ ଏଇଟା କଣ ସୁନ୍ଦର ଦେଖାଯିବ ବୋଲି ଭାବୁଛ?

ମାଧବୀ — ସବୁ କଥାରେ ଦୁନିଆଁକୁ ସନ୍ତୁଷ୍ଟ କରି କାମ କରିବାର ଅଭ୍ୟାସ ମୋର ପିଲାଦିନରୁ ନଥିଲା କି ଆଜିବି ମଧ୍ୟ ନାହିଁ।

ଗୋପୀ — ତମର ନଥାଇ ପାରେ କିନ୍ତୁ ମୋର ଅଛି। ମୋ ସାମାଜିକ ସମ୍ମାନକୁ ଏମିତି ଭାବରେ ଅପମାନିତ କରି ଚାଲିଯିବାକୁ ମୁଁ ଦେବିନି।

ମାଧବୀ — ତମରି ବାରଣ ସତ୍ତ୍ୱେ ମୁଁ ଏଠିକି ଯେମିତି ଦିନେ ଚାଲି ଆସିଥିଲି ଆଜିବି ଠିକ୍ ସେମିତି ଚାଲିଯାଇ ପାରିବି।

| | |
|---|---|
| ଗୋପୀ | କିନ୍ତୁ ଯାହା ଉପରେ ବିଶ୍ୱାସ କରି ଏ ଘର ଛାଡ଼ି ଦଉଛ, ଜାଣ ସେ ହଉଛି ମୋ ଚାକିରୀ ନ ପାଇବାର ମୁଖ୍ୟ.....। |
| ମାଧବୀ | ନାଁ ସେ କଥା ମିଛ। ପ୍ରକୃତରେ କୋଉ ଉପାୟରେ ସେ ଚାକିରୀ ପାଇଛନ୍ତି ସେ କଥା ତୁମକୁ ଅନେକ ଥର କହିଛନ୍ତି। |
| ଗୋପୀ | ପରେଶ ଯେ ସତ କହିଛି ତା ତୁମେ ବିଶ୍ୱାସ କରୁଛ କେମିତି। |
| ମାଧବୀ | ମୋର ବିଶ୍ୱାସ କରିବାର ଯଥେଷ୍ଟ କାରଣ ଅଛି। ଆଉ ମଧ୍ୟ ସେ ତୁମକୁ ଅନେକ ଥର କହିଛନ୍ତି ତୁମେ ପ୍ରତିବାଦ କଲେ ତାଙ୍କର କିଛି କ୍ଷତି ହେଇଯିବି। ତଥାପି ତୁମେ ନିରବ ରହିଛ କାହିଁକି? |
| ଗୋପୀ | ମାଧବୀ ତୁମେ କଣ କହିବାକୁ ଚାହୁଁଛ? |
| ମାଧବୀ | ତୁମରି ପାଖରୁ ତୁମର ନାର୍ଯ୍ୟ ଦାବିଟି ଅନ୍ୟ ଜଣେ ଅନ୍ୟାୟ ଭାବରେ ଛଡେଇ ନେଲା ପରେ ତୁମେ ଯଦି ପଦେ ହେଲେ ପ୍ରତିବାଦ କରିପାରିଲନି। ତୁମରୀ ସ୍ତ୍ରୀ ହିସାବରେ ସାରା ଜୀବନ ନିରାପଦରେ ରହି ପାରିବି ବୋଲି କଉ ଭରସାରେ ଏଠି ପଡି ରହିବି। ତା ପରେ ମୁଁ ତ କିଛି ଖରାପ କାମ କରିବାକୁ ଯାଉନି। ନିଜ ପାଇଁ ଖଣ୍ଡେ କର୍ମ ସଂସ୍ଥାନ ଯୋଗାଡ କରିବାର ସୁଯୋଗ ମୋତେ ଦବନି........। |
| | (ବାହାରୁ କାରର୍ ହର୍ଣ୍ଣ ଶୁଣାଗଲା) |
| | ପରେଶ ମୋତେ ଅନେକ ବେଳୁ ଅପେକ୍ଷା କଲେଣି, ମୁଁ ଆସୁଛି..। |



# ଦୃଶ୍ୟ - ୧୦

## ଅଫିସ କୋନ

(ଧନେଶ୍ୱର ବାବୁ ବସିଛନ୍ତି, ବାହାରୁ ଗୋପୀ ଆସିଛି କିନ୍ତୁ ପୁଣି ଫେରି ଯାଇଛି । )

ଧନେଶ୍ୱର — ଗୋପୀବାବୁ ଆସନ୍ତୁ........ କୁଆଡେ ଆସି ପୁଣି ହଠାତ୍ ଚାଲିଯାଉଛନ୍ତି ।

ଗୋପୀ — ସାମନ୍ତ ସାହେବ ନାହାଁନ୍ତି ବୋଧହୁଏ ।

ଧନୀ — ଶୁଣିଲି ଆପଣ ଚାକିରୀ ନା ପାଇବା ବିଷୟରେ ଅଭିଯୋଗ କରି ଗୋଟେ ଦରଖାସ୍ତ କରିଛନ୍ତି?

ଗୋପୀ — ହଁ ମୁଁ ଇଣ୍ଟରଭିୟୁରେ ଭଲ କରିବି ଚାକିରୀ ଅନ୍ୟକଣକୁ ଦିଆଯାଇଛି ।

ଧନେଶ୍ୱର — ପରେଶକୁ ବାହାର କରିଦିଆଯାଇ ଆପଣଙ୍କୁ ତା ଜାଗାରେ ରଖି ଦେବେ ବୋଲି ଭାବୁଛନ୍ତି ।

ଗୋପୀ — କିଛି ନହେଲେ ଗୋଟେ ଇନ୍‌କ୍ୱାରି ତ ହୋଇପାରିବ ।

ଧନୀ — କା ବିରୁଦ୍ଧରେ ଆପଣ ଇନ୍‌କ୍ୱାରୀ ଚାହୁଁଛନ୍ତି ? ମନ୍ତ୍ରୀଙ୍କ ବିରୁଦ୍ଧରେ? ତା ପରେ ପରେଶ ମନ୍ତ୍ରୀଙ୍କ ଲୋକ ନ ହୋଇ ପାରେ ଆପଣ ଇଣ୍ଟରଭିୟୁରେ ଫାଷ୍ଟ ହେଇଛନ୍ତି ବୋଲି ପ୍ରମାଣ କଣ?

ଗୋପୀ — ଆପଣ ଅନେକଥର ଏ କଥା କହିଛନ୍ତି ।

ଧନୀ — ମୋ କହିବା ମିଛ ହୋଇପାରେ । ସାମନ୍ତ ସାହେବ ନିଜେ ଇଣ୍ଟରଭିୟୁ କରିଛନ୍ତି, ସେ ଯାହାକୁ ଚାହିଁବେ ରଖି ପାରିବେ ।

| | |
|---|---|
| ଗୋପୀ | ନାଁ ସାମନ୍ତ ସାହେବଙ୍କୁ ଏଥିରେ ମିସ୍‌ଗାଇଡ୍ କରାଯାଇଛି । ତିରିଶ ହଜାର ଟଙ୍କା ଖାଇ ମିଛରେ ମନ୍ତ୍ରୀଙ୍କ ନାରେ ଫୋନ କରାଯାଇଛି । |
| ଧନୀ | ଏ ସବୁ କିଏ କରିଛି ବୋଲି ଭାବୁଛନ୍ତି ? |
| ଗୋପୀ | ସେଇଟା ଆପଣ ଭଲ ଭାବରେ ଜାଣନ୍ତି । ତେବେ ସାମନ୍ତ ସାହେବ ଇନ୍‌କ୍ୱାରୀ କଲେ ନିଜେ ଜାଣି ପାରିବେ । ମୋ ପାଖରେ ବି ଯଥେଷ୍ଟ ପ୍ରମାଣ ଅଛି । |
| ଧନୀ | କଣ ପରେଶ ତୁମର ସେଇ ଝିଅଟି ଆଗରେ ଯାହା କହିଛି ସେଇଟା ସତ ବୋଲି ତୁମେ ବିଶ୍ୱାସ କରୁଛ । |
| ଗୋପୀ | ହଁ । |
| ଧନୀ | ସାମନ୍ତ ସାହେବ ଏଥିରୁ ଭାଗ ନେଇ ନାହାଁନ୍ତି ବୋଲି କିଛି ପ୍ରମାଣ ରଖିଛ । |
| ଗୋପୀ | ନାଁ, ଏ ସବୁ ଆପଣଙ୍କର କାରସାଦି, ଆଜି ମୁଁ ଠିକ୍ ଜାଣିପାରିଛି । ମୁଁ ଏ କଥା ପୋଲିସରେ ବି ରିପୋର୍ଟ କରିବି । |
| ଧନୀ | ହଠାତ୍ ଏତେ ଉତ୍ୟକ୍ତ ହେଲେ ଚଳିବ ଗୋପୀ ବାବୁ । ପ୍ରେମରେ ପଡି ପରେଶ ଝିଅଟା ଆଗରେ ବାହାଦୂରୀ ଦେଖେଇ କିଛି କହି ଦେଇଛି । ତାକୁ ବିଶ୍ୱାସ କରି ପୋଲିସ କୋର୍ଟ କଚେରୀ ଏ ସବୁ ଟାଣି ନବାଟା ଭଲ ହେବନି । |
| ଗୋପୀ | ନାଁ ମୁଁ ଆପଣଙ୍କ ଭଳିଆ ବାଜେ ଲୋକଙ୍କୁ ନିଶ୍ଚୟ ପଦାରେ ପକାଇ ଦେବି । |
| ଧନୀ | ଭୋଳା......... ଗୋଟେ ରିକ୍‌ସା ଡାକତ । |
| ଗୋପୀ | ଆପଣ କଣ କହିବାକୁ ଚାହାଁନ୍ତି । |
| ଧନୀ | ସେଦିନ ଆପଣ ଏମିତି ଭାବ ପ୍ରବଣ ହେଇ ସେନ୍‌ସ୍‌ଲେସ୍ ହୋଇଯାଇଥିଲେ । ଆଜି ହଠାତ୍ ଅସୁସ୍ଥ ହୋଇ ପଡିଲେଣି । ତେଣୁ ଘରକୁ ଯିବାକୁ ରିକ୍‌ସାଟା ନିହାତି ଦରକାର । |
| ଗୋପୀ | ମୁଁ କିନ୍ତୁ ଆଜି ସେମିତି ଫେରିବିନି....... । ମୁଁ ଯାହାର ଗୋଟେ ସମାଧାନ ଚାହେଁ । |

ଧନୀ (ହସି) ସମାଧାନ ! ସୁନା ପିଲାଟି ଭଳି ଚାଲିଯାଆନ୍ତୁ। ନହେଲେ ମୁଁ ବଳ ପ୍ରୟୋଗ କରିବାକୁ ବାଧ୍ୟ ହେବି। ଗେଟ୍ ଆଉଟ୍।

(ହଠାତ୍ ଚିତ୍କାରରେ ଗୋପୀ କିଛି ରିଏକ୍ଟ କରିପାରିନି। ଉତେଜନା ବସତଃ ହାତରେ ଅଜାଣତରେ ଗୋଟେ ଅଫିସ୍ ଫାଇଲ୍ ଧରି ନେଇଛି)।

ହଁ ହଁ ସେ ଅଫିସ୍ ଫାଇଲ୍‌ଟା ରଖିଦେଇ ଯାଆନ୍ତୁ।

(ଗୋପୀ ଫାଇଲ୍‌ଟା ଧନେଶ୍ୱର ମୁହଁକୁ ଫୋପାଡି ଦେଇ ଚାଲି ଯାଉ ଯାଉ ଧନେଶ୍ୱର ରାଗି ଯାଇଛି)

ର୍‌ାସ୍କେଲ୍! ଦାଦାଗିରି ଦେଖଉଛୁ। ପୋଲିସ୍‌ରେ ରିପୋର୍ଟ କରିବୁ ? .......ଯା....... କଉ ବାପା ଆଗରେ କହିବୁ ଯା....। ଗେଟ୍ ଆଉଟ୍।

(ଧନେଶ୍ୱର ଗୋପିକୁ ଧକ୍‌କା ଦେଇ ବାହାରେ ଛାଡିଦେଇ ଆସିଛି। ବୋତଲ ବାହାର କରି ପିଇ ଚାଲିଛି)

ଆବେ କିଏ ଖାଉନିବେ। ଚପରାଶିଠୁ ଆରମ୍ଭ କରି ମନ୍ତ୍ରୀ ପର୍ଯ୍ୟନ୍ତ। କଉଟା ଭଦ୍ରଲୋକ.....। ଶଳା ମୋତେ ପୋଲିସ ଦେଖେଉଛୁ...।

(ହଠାତ୍ ଉଠି ପଡିଲା....... ଗୋଟେ ଦିଟା ଫାଇଲ୍ ଚିରି ପକାଇଲା.....ଓ କିଛି ଫାଇଲ୍‌କୁ ତଳେ ପକାଇଦେଲା ଫୋନ ରିସିଭର ଉଠେଇଲା)

ଧନେଶ୍ୱର ହାଲୋ.....ହାଲୋ......... ପୋଲିସ ଷ୍ଟେସନ.......
କିଏ ........ ରମେଶ........ହାଲୋ ହାଲୋ.........।



## ଦୃଶ୍ୟ - ୧୧

- ଗୋପୀର ଘର - ସମୟ - ରାତ୍ରି

ମାଧବୀ — ଆପଣ ଏ କଥା ବିଶ୍ୱାସ କରୁଛନ୍ତି କାକା ।

ମାଷ୍ଟର — ମୋ ବିଶ୍ୱାସରେ କଣ ଅଛି ମା, ପୋଲିସ୍ ବିଶ୍ୱାସ କରିଛି ବୋଲି ଅଟକେଇ ରଖିଛି । ତା ପରେ ଗୋପୀକୁ ପଚାରିଲେ ଅବା କିଛି କୁହନ୍ତା, ସେ ସତେ ଯେମିତି ମୂକ ହୋଇ ଯାଇଛି ।

ମାଧବୀ — ପୋଲିସ୍ ତାଙ୍କୁ ଛାଡି ଦେବାକୁ ମନା କରିଦେଲା ନା?

ମାଷ୍ଟର — ହଁ ଇନ୍‌ସପେକ୍ଟର ରମେଶ ଯିଏ ତାକୁ ଆରେଷ୍ଟ କରିଛି ସେ ଇଛା କଲେ ଯାହା କରିବ । ସେ ଏବେ ବାହାରକୁ ଯାଇଛି ସେ ଫେରିଲେ ଯାହା ହେବ ।

ମାଧବୀ — ଆମକୁ ତାହାହେଲେ କଣ କରିବାକୁ ପଡିବ କାକା ?

ମାଷ୍ଟର — ବର୍ତ୍ତମାନ ଗୋପୀକୁ କୌଣସି ଉପାୟରେ ଥାନାରୁ ଜାମିନ୍‌ରେ ଆଣିବାକୁ ହବ ମା । ମୋତେ ଯାଇ କିଛି ବ୍ୟବସ୍ଥା କରିବାକୁ ପଡିବ । ନ ହେଲେ ଯାଇ ଡି.ଏସ୍.ପି ଙ୍କୁ ଦେଖା କରିବାକୁ ହବ ।

ମାଧବୀ — ମୁଁ ବି ସାଙ୍ଗରେ ଯିବି କାକା... ।

ମାଷ୍ଟର — ନା ମାଧବୀ ତୁ ଥା, ଏ ରାତିଟାରେ ତୋର ଯିବା ଠିକ୍ ହବନି । ପରେଶଟାର ଆଜି ଫେରିବାର କଥା ସେ ଆସିଲେ ବରଂ କହିଦେବୁ, ମୁଁ ଚାଲିଲି........ ।

(ମାଷ୍ଟର କାକା ଚାଲିଗଲେ.........
ଆଲୋକ କମିଗଲା - ପୁଣି ଜଳି ଉଠିଲା
ବାହାରୁ ଆସିଲା ଗୋପୀ )

| | |
|---|---|
| ମାଧବୀ | ପୋଲିସ୍ ତାହାହେଲେ ଛାଡ଼ି ଦେଲା । |
| ଗୋପୀ | ହଁ ମୋତେ ଯାଇ ଧନେଶ୍ଵର ବାବୁଙ୍କୁ କ୍ଷମା ମାଗିବାକୁ ହେବ । |
| ମାଧବୀ | ସତରେ କଣ ତୁମେ ତାଙ୍କୁ ଖରାପ ବ୍ୟବହାର କରିଛ । |
| ଗୋପୀ | ତାଙ୍କୁ ମାଡ ଦେଇଛି ତାଙ୍କ ଅଫିସ୍‌ର ଇମ୍ପୋଟାଣ୍ଟ କାଗଜପତ୍ର ନଷ୍ଟ କରି ଦେଇଛି ବୋଲି ପୋଲିସ୍ ପାଖରେ ରିପୋର୍ଟ ଦେଇଛି । ସେଇ ଧନେଶ୍ଵର ବାବୁ ମାଧବୀ..... ସେଇଟା ସତରେ ବଡ ବଦମାସ୍ । |
| ମାଧବୀ | ପୋଲିସ୍, ଏ ସବୁ କିନ୍ତୁ ବିଶ୍ଵାସ କଲା କେମିତି । |
| ଗୋପୀ | ବିଶ୍ଵାସ କରିଛି ବୋଲି ମୋର ଏଇ ଅବସ୍ଥା ମାଧବୀ , ମୁଁ ଯେତେ କହିଲେବି ସେ ରମେଶ ବାବୁଟା ଏତେ ନିର୍ଦ୍ଦୟ୍, ଏମିତି ପ୍ରକାର ବ୍ୟବହାର ମଣିଷକୁ କରାଯାଏନି । (ପିଠି ଖୋଲି ମାଡ ଚିହ୍ନ ଦେଖାଇଲା) ଧନେଶ୍ଵର ବାବୁଙ୍କ ପାଖରେ ମୋତେ ଭୁଲ ମାଗିବାକୁ ହବ ମାଧବୀ । ପୋଲିସ ଅଫିସର ଏଇ ସର୍ତ୍ତରେ ମୋ ଛାଡିଦେଇଛି । (ଆଖିରେ ଲୁହ ଆସିଗଲା) |
| ମାଧବୀ | (ଆଖିରେ ଲୁହ) ଆମେ ଗାଁ କୁ ପୁଣି ଫେରିଯିବା ଭଲ ହେବ ବୋଲି ଭାବୁଛି । ଦୁଇ କଣ ମିଶି ବାପାଙ୍କର ସେଇ ସ୍କୁଟି ଚଳେଇଲେ କିଛି ଅସୁବିଧା ହବନି ଆମର । ତମେ ଆସ........ ତୁମେ ସକାଳୁ କିଛି ଖାଇନ । |

(ସଂଗେ ସଂଗେ ମାଧବୀ ଚାଲିଯାଏ । ଗୋପୀ ତା ବାଟକୁ ଚାହିଁ ରହେ । ଗାଁ ଚାଟଶାଳୀର ଶବଦ ପିଲାଙ୍କ କଣ୍ଠରୁ ଶୁଣାଯାଏ । ବିଲୁଆ ବ ଡ ଚତୁର, ପଇଡ ବଡମଧୁର । ଅରଣା ମଇଁଷି ରହିଛି ଅନାଇ ମଇଁଷିର ପାଖ ନ ଯାଅ ଦନାଇ) ।

## ଦୃଶ୍ୟ - ୧୨

(ଅଫିସ୍ ଗୃହ)

(ଗୋପୀ ଓ ଧନେଶ୍ୱର ବାବୁ କଥା ହୋଇ ଆସିଲେ ।)

ଧନୀ — ଆପଣଙ୍କ କଥା ମୋତେ ରମେଶ କହିଛି । ମୁଁ ଆପଣଙ୍କୁ ହିଁ ଅପେକ୍ଷା କରୁଥିଲି ।

ଗୋପୀ — ମୋର ଭୁଲ ହୋଇଯାଇଛି ସାର, ମୋତେ କ୍ଷମା କରିଦିଅନ୍ତୁ ।

ଧନୀ — ଆରେ Old fashioned କ୍ଷମା ଭୁଲ କଥା ଛାଡି ପ୍ରଥମେ କମ୍ଫଟେବଲି ବସନ୍ତୁ ।

ଗୋପୀ — ଆପଣ କହିଲେ ଯାଇ ରମେଶ ବାବୁ କେସ୍‌ଟି ଉଠେଇ ଦେବେ । ନହେଲେ କେସ୍‌ଟି କୋର୍ଟକୁ ଦେଇଦେଲେ ମୁଁ ହଇରାଣ ହୋଇଯିବି । ଦୟାକରି ଟିକିଏ ଥାନାକୁ ଫୋନ୍ କରନ୍ତୁ ।

ଧନୀ — ସେ ସବୁର ଆବଶ୍ୟକତା ନାହିଁ ଗୋପୀ ବାବୁ । ରମେଶ ମୋତେ ଯାହା କହିଛି ଆପଣ ତାଙ୍କୁ ଟିକିଏ ସାହାଯ୍ୟ କରିବାକୁ ପଡିବ । ତା ପରେ ସେ କେସ୍ କଥା ଚିନ୍ତା କରିବ ।

ଗୋପୀ — ମୁଁ ସାହାଯ୍ୟ କରିବି ସାର୍ ।

ଧନୀ — ଦେଖ ଅବଷ୍ଟ୍ରକସନ୍ ଇନ୍ ପବ୍ଲିକ୍ ୱାର୍କରେ ତମକୁ ସେ ପକେଇଛି ପ୍ରମାଣ ହୋଇଗଲେ ଛ ମାସ । ପୋଲିସ୍ ଲୋକ ମାଗଣା ମାଗଣାରେ କାହିଁକି ସାହାର୍ଯ୍ୟ କରିବ କହୁନାହାନ୍ତି ।

ଗୋପୀ — ମୋତେ ତାହାହେଲେ କଣ କରିବାକୁ ହେବ?

ଧନୀ ରମେଶ ବି ଗୋଟେ ଅସୁବିଧାରେ ପଡିଯାଇଛି। ତା ନାଁରେ ଗୋଟେ ରିପୋର୍ଟ ଉପରେ ଜଣେ ଉପର ହାକିମ ଇନ୍‌କ୍ୱାରୀ କରି ଆସୁଛନ୍ତି। ତାଙ୍କୁ ଟିକିଏ ଖୁସି କରିବା ପାଇଁ ଆପଣଙ୍କର ସାହାଯ୍ୟ ଦରକାର।

ଗୋପୀ ବୁଝି ପାରିଲିନି ସାର୍।

ଧନୀ ସେ ହାକିମ୍‌ଙ୍କୁ ସନ୍ତୁଷ୍ଟ କରିବାକୁ ସବୁ ଯୋଗାଡ ହୋଇଯାଇଛି। କେବଳ..........। ବହୁତ Young ଅବସ୍ଥାରୁ ତାଙ୍କର ସ୍ତ୍ରୀ ମରିଯାଇଛନ୍ତି ତ?

ଗୋପୀ ମୋତେ ସେଥିପାଇଁ କଣ କରିବାକୁ ପଡିବ....।

ଧନୀ ଏବେ କିଛି ବ୍ୟସ୍ତ ହେବାର ନାହିଁ। ସମୟ ଆସିଲେ ଆମେ ଯାଇ ଖବର ଦେବୁ। ଘଣ୍ଟେ ଦୁଇ ଘଣ୍ଟା ପାଇଁ ଯୁବତୀ ଝିଅଟିଏ ପହଞ୍ଚି ଗଲେ ରମେଶ କାମ ବଡିବା ସଙ୍ଗେ ସଙ୍ଗେ ଆପଣଙ୍କ କାମ ବି ବଢିଯିବ।

ଗୋପୀ ଝିଅ ମାନେ ଆପଣ କାହାକୁ ମିନ୍ କରୁଛନ୍ତି।

ଧନୀ ଦେଖନ୍ତୁ ରମେଶ ପଇସା ଖର୍ଚ୍ଚ କରିବାକୁ ପ୍ରସ୍ତୁତ ଅଛି। ହେଲେ ଏତେ ବଡ ଲୋକକୁ ତ ଯାଛା ତା ଜିନିଷ ଯୋଗାଇ ହେବନି। ପରେଶ ଯାହାକୁ ଧରି ଘୁରି ବୁଲୁଛି। ଶୁଣିଲି ସେ ତୁମରି ଘରେ ରହୁଛି।

ଗୋପୀ ମୋ ନାଁରୁ କେସ୍‌ଟା ଉଠେଇ ଦେବେ ତ ସାର୍।

ଧନୀ ଆରେ କେସ୍ କିବା ଛାର କଥା। ତମେ ଏଥର ସାହାଯ୍ୟ କର ଦେଖ ଯଦି ରମେଶ Successful ହେଇଯାଉ ଦେଖିବ। ଆମେ କେମିତି ତୁମକୁ ସାହାଯ୍ୟ କରୁଛୁ।

ଗୋପୀ ଠିକ୍ ଅଛି ସାର......... ରମେଶ ବାବୁଙ୍କୁ ଆପଣ କୁହନ୍ତୁ ଓ ତାଙ୍କ କାମ ହୋଇଯିବ।

ଧନୀ ଭେରି ଗୁଡ୍, ମୁଁ ସାଙ୍ଗେ ସାଙ୍ଗେ ରମେଶ ସହିତ ଫାଇନାଲ୍ କରି ଦଉଛି। (ଫୋନ ଡାଏଲକରି) ହାଲୋ। - ପୋଲିସ ଷ୍ଟେସନ....... Yes ରମେଶ.....ହଁ ମୁଁ କହୁଛି। ସବୁ ହୋଇଗଲା

ଭାଇ। ହଁ ସେ ସାହାଯ୍ୟ କରିବାକୁ ରାଜି। ଏଇଠି ଅଛନ୍ତି। ଜାଣିବି?
ଗୋପୀ ବାବୁ ।

(ଗୋପୀ ଆସିଛି ଧନେଶ୍ୱର ତାପାଖକୁ ରିସିଭର
ବଢାଇ ଦେଇଛି, ଗୋପୀ ରିସିଭର ଧରି ନେଇଛି
କିନ୍ତୁ ଧନେଶ୍ୱର କୁ ଲକ୍ଷ କରି କହୁଛି।)

ଗୋପୀ — ପୋଲିସ୍ ଅଫିସର ରମେଶ ବାବୁ ମୋ ମୁହଁରୁ ଶୁଣିବାକୁ ଚାହାନ୍ତି ନା...... ମୁଁ ତାଙ୍କୁ ନିଶ୍ଚୟ କରିଦେବି। ତାଙ୍କ ଉପର ହାକିମଙ୍କୁ ଖୁସି କରେଇବାକୁ ମାଧବୀକୁ ନିଶ୍ଚୟ ପାଙ୍କରେ ନେଇଯିବି। ଏଣୁ କରିବି ନାଁ...। ( ଗୋପୀ ରିସିଭର ପକାଇଦେଇ ଧନେଶ୍ୱର ତଣ୍ଟିକୁ ଚାପିଧରେ)

ରାସ୍କେଲ..... ତମେମାନେ ଏତେ ତଳକୁ ଯାଇପାର....।

(ଗୋପି ଧନେଶ୍ୱରକୁ ତଳେ ପକାଇ ଦେଇଛି।
ପୁଣି ସେଇ ଗାଁ ଚାଟଶାଳୀର ଶବଦ ପିଲାମାନଙ୍କ
କଣ୍ଠରେ। ଅରଣା ମଇଁଷି ଅନାଇ ରହିଛି।
ଫୋନ୍ ରିସିଭର ଝୁଲି ପଡିଛି। ସେଇ
ଫୋନ୍‌ରେ, ଅନ୍ୟ ଦିଗରୁ ପୋଲିସ୍‌ର କଣ୍ଠସ୍ୱର।
ହାଲୋ ହାଲୋ ଧନେଶ୍ୱର। ଶୁଣାଯାଉଛି।
ମଂଚ ଅନ୍ଧାର ହୋଇଛି।)...



# ଦୃଶ୍ୟ - ୧୩

(ଗୋପୀର ଘର। ମାଧବୀ ଜିନିଷ ସଜାଡିବାରେ ଲାଗିଛି)

| | |
|---|---|
| ମାଷ୍ଟର | (ଆସିଛି) ତୁମେ ମାନେ ସତରେ କଣ ଚାଲିଯିବ ମା ? |
| ମାଧବୀ | ଆଉ କଣ କରିପାରିବି ମଉସା, ତାଙ୍କର ମନର ଅବସ୍ଥା ଯାହା ମନା କରିବାକୁ ଇଚ୍ଛା ହେଉନି। |
| ମାଷ୍ଟର | ତୋ ଚାକିରୀରେ ତୁ ତାହାହେଲେ ଜଏନ୍ କରିବୁନି। |
| ମାଧବୀ | ନାଁ। |
| ମାଷ୍ଟର | ଗୋପୀ ଗଲା କୁଆଡେ, କାହିଁ ତ ଦେଖା ଯାଉନି? |
| ମାଧବୀ | ଏଇ ପାଖକୁ ଯାଇଛନ୍ତି ଏବେ ଫେରିବେ। |
| ମାଷ୍ଟର | ପିଲାଟାର ମନ ବହୁତ ଭାଙ୍ଗି ଯାଇଛି ମାଧବୀ......। ତା ଭଳି ସରଳ ପିଲାକୁ ପୋଲିସର ବ୍ୟବହାର ବହୁତ ବାଧିଛି। |
| ମାଧବୀ | ଆଜି ଦୁନିଆଁର ଘୋଡା ଦୌଡରେ ଯେ ଭଲ ଲୋକର ସ୍ଥାନ ନାହିଁ ସେଇଟା ମୁଁ ଠିକ୍ ବୁଝିପାରିଛି। ଆମେ ସମୟ ସହିତ ତାଳ ପକାଇ ଚାଲି ପାରୁନୁ କାକା। |
| ମାଷ୍ଟର | ସବୁ ଭାଗ୍ୟ ମା......। ମୋ ପୁଅ ବିନୋଦ ଗୋଟିଏ ଝିଅ ଉପରେ ଅଭିମାନ କରି ଆତ୍ମହତ୍ୟା କରିଥିଲା ମା, ଗୋପୀକୁ ପାଇ ସେ କଥା ମୁଁ ଭୁଲିବାକୁ ଚେଷ୍ଟା କରୁଥିଲି-। ତୁ ଆସିଲୁ ଏ ଘର ପୁରି ଉଠିଲା-କିନ୍ତୁ ଭାଗ୍ୟ ମଧ୍ୟ ସେତେକ କରେଇ ଦେଲାନି ମା -। ତମ ମାନଙ୍କ ସହିତ ମିଶି ମୁଁ ବି ଆଜି ହାରିଗଲି ମା.....।(ଆଖିରେ ଲୁହ) |
| ଗୋପୀ | ମୁଁ କିନ୍ତୁ ହାରିଯାଇନି କାକା। ଏତେ ଦିନ ପରେ ଦୁନିଆକୁ ଠିକ୍ ଚିହ୍ନି ପାରିଛି। |
| ମାଷ୍ଟର | ମାନେ? |

ଗୋପୀ	ମାଧବୀ- ତୁମେ କହୁଥିଲ ନା ଅନ୍ୟାୟକୁ ନିରବରେ ସହିଯିବା ଅପେକ୍ଷା ଦୁର୍ନିତିର ସୁଅ ମୁହଁରେ ପ୍ରତିବାଦର ସ୍ୱର ଉତ୍ତୋଳନ କରି ନିଶ୍ଚିହ୍ନ ହୋଇଯିବାରେ ଅଧିକ ଗୌରବ ଅଛି ।

ମାଧବୀ	ହଁ ମୁଁ ସେୟାହିଁ ବିଶ୍ୱାସ କରେ ।

ଗୋପୀ	ତୁମ ବିଶ୍ୱାସ ସଂପୂର୍ଣ୍ଣ ଠିକ୍ । ତୁମ କଥା ମୁଁ ଆଜି ପ୍ରମାଣିତ କରି ଦେଖେଇ ଦେଇଛି । ଧନେଶ୍ୱର ଭଳି ଗୋଟେ ରାକ୍ଷାସକୁ ମୁଁ ଏ ଦୂନୀଆରୁ ବିଦା କରିଦେଇଛି ।

ମାଷ୍ଟର	ତୁମେ ଏମିତି କଣ କହୁଛ ଗୋପିନାଥ ।

ଗୋପୀ	ହଁ ମାଷ୍ଟର କାକା ମୁଁ ତାକୁ ଶେଷ କରିଦେଇଛି । ଅବଶ୍ୟ ଅତ୍ୟଧିକ ଉତେଜିତ ହେବା ଫଳରେ ମୁଁ ଏ ପ୍ରକାର ଭୁଲ କରି ବସିଛି । କିନ୍ତୁ ଏଥିପାଇଁ ମୋର ଟିକେ ହେଲେ ଅବଶୋଷ ନାହିଁ । ମୁଁ ଏ ଭୁଲ ପାଇଁ ଯେ କୌଣସି ଦଣ୍ଡ ହସି ହସି ବରଣ କରିବାକୁ ପଛେଇ ଯିବିନି । କାରଣ ଏ ଘଟଣା ସ୍ପନ୍ଦନହୀନ ଗୋପୀନାଥ ଦେହରେ ପୁରୁଷାର୍ଥର ଉଜ୍ଜଳ ଶିଖାକୁ ପ୍ରଜ୍ଜଳିତ କରି ଦେଇଛି ।

( ମାଷ୍ଟର କାକା ଓ ମାଧବୀ ଆର୍ଶ୍ଚର୍ଯ୍ୟ ଚକିତ ହୋଇ ଗୋପୀକୁ ଚାହିଁ ରହିଥାନ୍ତି । ଦୂରରୁ ପୋଲିସ ସାଇରନ୍‌ର ଶବ୍ଦ ଆସ୍ତେ ଆସ୍ତେ ପାଖେଇ ଆସେ । )

ଗୋପୀ	ମୁଁ ଫେରି ଆସିବି ମାଧବୀ । ଏ ଦୂନୀଆକୁ ମୁକାବିଲା କରିବାର ଅଦମ୍ୟ ସାହସ ନେଇ ମୁଁ ପୁଣି ଫେରି ଆସିବି । ମୋର ବିଶ୍ୱାସ ତୁମେ ମୋତେ ଅପେକ୍ଷା କରିବ ।

( ଗୋପୀ ବାହାରକୁ ଯିବାକୁ ଅଗ୍ରସର ହୁଏ । ମାଧବୀ ଲୁହ ଭରା ଆଖିରେ ତାକୁ ଅଟକାଇବାକୁ ହାତ ବଢାଇ ଦିଏ । ଦୁହେଁ ସେଇ ମୁଦ୍ରାରେ ଠିଆ ହୋଇ ରୁହନ୍ତି । ମାଷ୍ଟର କାକାଙ୍କ ଥରିଲା କଣ୍ଠରେ ଶୁଣାଯାଏ । )

ମାଷ୍ଟର :	The woods are lovely dark and deep.
But I have many promises to keep,
Miles to go before I sleep
And miles to go before I sleep.



# ସୁଅ

କଳା ପରିଷଦ ଢେଙ୍କାନାଳ ଦ୍ୱାରା ବନ୍ଧୁ ମଚଂରେ ଅଭିନୀତ ଓ ଦୂରଦର୍ଶନରେ ପରିବେଷଣ ସମୟରେ ଭାଗନେଇଥିବା ଶିଳ୍ପୀମାନେ ।

| | | |
|---|---|---|
| ଗୋପୀ | : | ସତ୍ୟନାରାୟଣ ପଣ୍ଡା/କିଶୋର ରାଉତ |
| ପରେଶ | : | ଶତ୍ରୁଘ୍ନ ମାଟି |
| ମାଷ୍ଟର | : | ସୁରେଶ ମିଶ୍ର |
| ମି.ସାମନ୍ତ | : | ହିମାଂଶୁ ପଣ୍ଡା/ଅନାଥ ବନ୍ଧୁ ସାହୁ |
| ଧନେଶ୍ୱର | : | ଚନ୍ଦ୍ରମଣି ବେହେରା/ଦିପ୍ତିକାନ୍ତ ପତି |
| ଭୋଳାନାଥ | : | ଇନ୍ଦ୍ରମଣି ବେହେରା |
| ମାଧବୀ | : | ତିଳୋତ୍ତମା ଖୁଣ୍ଟିଆ |
| ସଂଗୀତ | : | ସେକ୍ ଅମଜାଦ |
| ମଂଚ | : | ସୁରେଶ ମହାନ୍ତି |
| ନିର୍ଦ୍ଦେଶନା | : | ଦିଲ୍ଲୀଶ୍ୱର ମହାରଣା |

# ନାଟ୍ୟକାରଙ୍କ ଅନ୍ୟାନ୍ୟ ନାଟକ

## ପ୍ରକାଶିତ

### ରାଜାଘର ଖେଳ

(ଚରିତ୍ର ସଂଖ୍ୟା - ୨୦ ପୁରୁଷ ୧ ନାରୀ। ଅଭିନୟ ଅବଧି ଘ.୧.୩୦ମି.)

ମଧୁହାସ୍ୟ, ଶାଣିତ ବ୍ୟଙ୍ଗରେ ଭରା ଓଡ଼ିଆ ଲୋକନାଟ୍ୟ ପରମ୍ପରା ସୁଆଙ୍ଗ ଶୈଳୀରେ ରଚିତ ଏ ନାଟକରେ ଆମ ଦେଶର ସମସ୍ତ ପ୍ରଧାନମନ୍ତ୍ରୀଗଣ ଛଦ୍ମବେଶରେ ଅବତୀର୍ଣ୍ଣ ହୋଇଛନ୍ତି । ବୌଦ୍ଧିକ ରସିକତାରେ ଭରପୁର ଏ ନାଟକ ଜାତୀୟ ତଥା ରାଜ୍ୟସ୍ତରୀୟ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟ୍ୟରଚନା, ଶ୍ରେଷ୍ଠ ପ୍ରଯୋଜନା, ଶ୍ରେଷ୍ଠ ନିର୍ଦ୍ଦେଶନା ଭଳି ଅନେକ ପୁରସ୍କାର ପାଇ ଅଛି ।

### ଭୋଳାନାଥ ଦାସ ହାଜର ହେ

(ଚରିତ୍ର ସଂଖ୍ୟା - ୧୨ ପୁରୁଷ ୧ ନାରୀ। ଅଭିନୟ ଅବଧି ୨ଘଣ୍ଟା)

ସଂପୂର୍ଣ୍ଣ ହାସ୍ୟ ଓ ଉତ୍କଣ୍ଠା ଭରା ସାମାଜିକ ମୂଲ୍ୟବୋଧର ନାଟକ। ଅଧିକରୁ ଅଧିକ ଅର୍ଥ ସଂଗ୍ରହ ଓ ଉପଭୋଗ ସାମଗ୍ରୀ ଠୁଳ କରିବା ନିଶାରେ ବର୍ତ୍ତମାନର ଭାରତୀୟ ଯୁବସମାଜ ପାଶ୍ଚାତ ଅଭିମୁଖି ହେବାର କରୁଣ ପରିଣତି ଉପରେ ଆଧାରିତ। ରାଜ୍ୟସ୍ତରୀୟ ପ୍ରତିଯୋଗିତାରେ ଶ୍ରେଷ୍ଠ ପ୍ରଯୋଜନା ଓ ନିର୍ଦ୍ଦେଶନା ପାଇଁ ପୁରସ୍କୃତ।

### ବାର୍ତ୍ତା

(ଚରିତ୍ର ସଂଖ୍ୟା - ୧୨ ପୁରୁଷ ୧ ନାରୀ ଓ ଏକ ଶିଶୁ । ଅଭିନୟ ଅବଧି ୨ଘଣ୍ଟା)

ବିପ୍ଳବର ଦ୍ୱାହି ଦେଇ ଆଜିର ଯୁବ ସମାଜକୁ କିପରି କେତେକ ସଂସ୍ଥା ଉଗ୍ର ସନ୍ତ୍ରାସବାଦୀର ନାଗଫାସରେ କବଳିତ କରିରଖିଛନ୍ତି ଏବଂ ସେମାନେ ସେଇଠାରୁ ମୁକ୍ତିପାଇବା ପାଇଁ ଯେଉଁ ସଂଗ୍ରାମ ଚଳାଇଛନ୍ତି ତାର ସଂଘର୍ଷପୂର୍ଣ୍ଣ କାହାଣୀ । ହାସ୍ୟ ବିଶ୍ରାନ୍ତି ଭରା ସାମାଜିକ ସମସ୍ୟା ବହୁଳ ନାଟକ । ଅଖିଳ ଭାରତୀୟ ବେତାର ନାଟ୍ୟରଚନାରେ ଶ୍ରେଷ୍ଠ ବିବେଚିତ ଓ ରାଜ୍ୟସ୍ତରୀୟ ପ୍ରତିଯୋଗିତାରେ ଶ୍ରେଷ୍ଠ ପ୍ରଯୋଜନା, ନିର୍ଦ୍ଦେଶନା, ଅଭିନୟ ସମେତ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ।

### ନ୍ୟାୟ

(ଚରିତ୍ର ସଂଖ୍ୟା - ୮ପୁରୁଷ , ୧ନାରୀ, ଗୋଟିଏ ସେଟ୍। ଅଭିନୟ ଅବଧି ଘ ୧.୩୦ମିନିଟ୍)

ହାସ୍ୟ ଓ ଉତ୍କଣ୍ଠା ଭରା ସରିଓ କମିକ ଏ ନାଟକରେ ଆମ ଦେଶରେ ପ୍ରଚଳିତ ନ୍ୟାୟ ପଦ୍ଧତିର ଦୋଷ ଦୁଃର୍ବଳତାକୁ ଆଙ୍ଗୁଳି ନିର୍ଦ୍ଦେଶ କରାଯାଇଛି । ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ପର୍ଯ୍ୟାୟ କ୍ରମେ ଗୋଟିଏ ଥାନାରେ ଘଟିଯାଇଥିବା ଘଟଣାବଳୀ ଉପରେ ପର୍ଯ୍ୟବେଶିତ ଏ ନାଟକ ଜାତୀୟ ସ୍ତରରେ ନାଟ୍ୟରଚନା, ନାଟ୍ୟ ପ୍ରଯୋଜନା ଏବଂ ଅଭିନୟ ପାଇଁ ପୁରସ୍କୃତ ଏବଂ ଦୂରଦର୍ଶନ ପ୍ରସାରିତ।

### ଆସନ୍ନ ପ୍ରଳୟ

(ଚରିତ୍ର ସଂଖ୍ୟା- ୧୧ ପୁରୁଷ ୧ ନାରୀ । ଅଭିନିୟ ଅବଧି ଦେଢଘଣ୍ଟା)

ନାଟକର ପ୍ରଥମ ଦଶମିନିଟ ସମଷ୍ଟିଗତ ଶାରୀରିକ ଅଙ୍ଗବିନ୍ୟାସ ବା ଫିଜିକାଲ ଥିଏଟର ଶୈଳୀର ବ୍ୟବହାର ଓ ପରବର୍ତ୍ତୀ ସମୟ ସଂପୂର୍ଣ୍ଣ ହାସ୍ୟରସ ଉପରେ ଆଧାରିତ । ମଣିଷ ଆଜି ଅତି ବୁଦ୍ଧିମାନ ହୋଇ ଭସ୍ମାସୁର ପାଲଟି ନିଜର ଧ୍ୱଂସକୁ ଡାକିଆଣୁଛି । ଏଇ ବାର୍ତ୍ତାକୁ ନେଇ ଏକ ନିଛକ ହାସ୍ୟରସାତ୍ମକ ନାଟକ। ଜାତୀୟ ସ୍ତରର ପ୍ରତିଯୋଗିତାରେ ଦୁଇ ଦୁଇ ବାର୍ ଶ୍ରେଷ୍ଠ ବିବେଚିତ ନାଟକ।

## ବାଇଶି ଠେଙ୍ଗାରେ ସ୍ୱାଧୀନତା

(ଚରିତ୍ର ସଂଖ୍ୟା ଅନେକ ହେଲେବି ସର୍ବନିମ୍ନ ୧୮ ପୁରୁଷ ଓ ଏକ ନାରୀ ଚରିତ୍ରରେ ଅଭିନିତ ହୋଇପାରିବ। ଅଭିନୟ ଅବଧି - ଏକଘଣ୍ଟା ତିରିଶ ମିନିଟ୍)

ରଣପୁର ପ୍ରଜାଆନ୍ଦୋଳନର ରକ୍ତାକ୍ତ ସ୍ୱାକ୍ଷର ଏ ଦେଶାତ୍ମବୋଧକ ନାଟକଟି ଫିଜିକାଲ ଥିଏଟର ଶୈଳୀରେ ଲିଖିତ। ତିନି ତିନି ଗୋଟି ଜାତୀୟସ୍ତରର ପ୍ରତିଯୋଗିତାରେ ଶ୍ରେଷ୍ଠ ପ୍ରଯୋଜନା ଓ ଶ୍ରେଷ୍ଠ ନିର୍ଦ୍ଦେଶନା ପାଇଁ ପୁରସ୍କୃତ ।

## ଭଲପାଇବାର ରଂଗ

(ଚରିତ୍ର ସଂଖ୍ୟା - ୫ ପୁରୁଷ, ୧ ନାରୀ, ଗୋଟିଏ ସେଟ୍ । ଅଭିନୟ ସମୟ - ୧ଘଣ୍ଟା ୨୦ମିନିଟ୍)

ଏକ ପ୍ରେମ କାହାଣୀକୁ ନେଇ ମୂଳରୁ ଶେଷ ପର୍ଯ୍ୟନ୍ତ ହାସ୍ୟ ଓ ଉତ୍କଣ୍ଠାରେ ଭରପୁର ଏ ନାଟକ ଦୂରଦର୍ଶନ ଓ ଆକାଶବାଣୀରେ ପ୍ରଚାରିତ ହେବା ସଂଗେ ସଂଗେ ହାସ୍ୟରସାତ୍ମକ ନାଟକ ଭାବରେ ଜାତୀୟ ସ୍ତରରେ ପୁରସ୍କୃତ ।

## ଦ୍ୱିତୀୟ ଈଶ୍ୱର

(ଚରିତ୍ର ସଂଖ୍ୟା - ୮ପୁରୁଷ ୧ ଶିଶୁ ଅଭିନୟ ସମୟ ଏକ ଘଣ୍ଟା)

ଐଶ୍ୱରୀକ ଶକ୍ତି ହାସଲ କରି ସାଧାରଣ ମନୁଷ୍ୟ ଦ୍ୱିତୀୟ ଈଶ୍ୱର ପାଲଟିଗଲେ କିକି ସମସ୍ୟାର ସମ୍ମୁଖୀନ ହେବାକୁ ହୁଏ ତାକୁ ଆଧାର କରି ଏକ ସିରିଓ କମିକ ଡ୍ରାମା। ବହୁ ମଂଚରେ ଅଭିନୀତ ଓ ଦୂରଦର୍ଶନ ଦ୍ୱାରା ପ୍ରଚାରିତ ।

## ଆପଣ ସାକ୍ଷୀ ରହିଲେ ହଜୁର

( ଚରିତ୍ର ସଂଖ୍ୟା - ୮ ପୁରୁଷ ୧ ନାରୀ ଚରିତ୍ର। ଅଭିନୟ ସମୟ ୧ଘଣ୍ଟା)

ଯୌତୁକ ସମସ୍ୟାକୁ ନେଇ ଏକ ହାସ୍ୟ ବିନୋଦ ପ୍ରେମ କାହାଣୀ ଉପରେ ଆଧାରିତ ଏ ନାଟକର ସମସ୍ତ ଘଟଣାବଳୀ ଗୋଟିଏ କୋର୍ଟରୁମ୍‌ରେ ଘଟିତ ହୋଇଛି । ବହୁ ମଂଚରେ ଅଭିନୀତ।

## ଚକେଗଲେ ବାର ହାତ

(ଚରିତ୍ର ସଂଖ୍ୟା - ୫ ପୁରୁଷ ୧ ନାରୀ ଅଭିନୟ ଅବଧି ୩୦ମିନିଟ୍)

ସଂପୂର୍ଣ୍ଣ ହାସ୍ୟରସର ନାଟକ, ଦୂରଦର୍ଶନ ପ୍ରଚାରିତ।

## ସୂର୍ଯ୍ୟପରାଗ

(ଚରିତ୍ର ସଂଖ୍ୟା - ୩ ପୁରୁଷ ୨ ନାରୀ ଅଭିନୟ ଅବଧି ୪୦ ମିନିଟ୍)

ସିରିଓ କମିକ ଏ ନାଟକ ବହୁବାର ଅଭିନୀତ ଓ ଆକାଶବାଣୀରେ ପ୍ରସାରିତ।

## ଅପ୍ରକାଶିତ ନାଟକ

ସେଦିନ ଆସୁଛି, କୁମାର କୂଳ ଚନ୍ଦ୍ରମା, ବୁମେରାଂ, ସୂର୍ଯ୍ୟ ଉଦୟର ବେଳ, ଅସମାପ୍ତ, ମଞ୍ଚ, ଭାଇଭାଇ, ମଙ୍ଗଳ ମହୁରୀର ତାନ, ଆମ୍ରପଲ୍ଲୀ, ଅର୍ପିତା, ମୋହିନୀ, ବାରମଜା, ସମାଧାନ ଓ ସାତଗୋଟି ବିଭିନ୍ନ ଭାଷାରୁ ଅନୁବାଦ ନାଟକ ।





## ଶ୍ରୀ ଦିଲ୍ଲୀଶ୍ୱର ମହାରଣା

ଜନ୍ମ - ନଭେମ୍ବର ୫, ୧୯୪୭

ଗ୍ରା: ଗୋଡିଡିହ, ଢେଙ୍କାନାଳ

ସମକାଳୀନ ଓଡିଆ ନାଟ୍ୟଜଗତରେ ନିଜପାଇଁ ଏକ ବିଶେଷ ପରିଚୟ ସୃଷ୍ଟି କରିଥିବା ନାଟ୍ୟକାର, ନିର୍ଦ୍ଦେଶକ ତଥା ନାଟ୍ୟ ସଂଗଠକ ଶ୍ରୀ ଦିଲ୍ଲୀଶ୍ୱର ମହାରଣାଙ୍କ ନାଟକ ଗୁଡିକ ଅଭିନବ ଭାବ ବିଭବ ଓ ଦୃଶ୍ୟବିମ୍ବ ସମାହାରରେ ଅନନ୍ୟ । ଉଭୟ ନାଟ୍ୟରଚନା ଓ ନିର୍ଦ୍ଦେଶନା ପାଇଁ ସେ ରାଜ୍ୟ ଓ ଜାତୀୟସ୍ତରରେ ଅନେକବାର ପୁରସ୍କୃତ ହେବା ସଙ୍ଗେ ସଙ୍ଗେ ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ଆଜୀବନ ସାଧନା ଏବଂ ଅସାମାନ୍ୟ ଅବଦାନ ନିମନ୍ତେ ଓଡିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ୨୦୦୨ ଓ ନାଟକ 'ବାର୍ତ୍ତା' ପାଇଁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ୨୦୦୪ ଦ୍ୱାରା ସମ୍ମାନୀତ ।

ନାଟକ ବ୍ୟତୀତ ସଙ୍ଗୀତ, ଚିତ୍ରକଳା ଓ ଅଭିନୟ ପ୍ରତି ସ୍ୱତନ୍ତ୍ର ରୁଚି ରଖିଥିବା ଶିଳ୍ପୀ ଶ୍ରୀ ମହାରଣାଙ୍କ ପ୍ରତିଷ୍ଠିତ ନାଟ୍ୟାନୁଷ୍ଠାନ 'କଳାପରିଷଦ, ଢେଙ୍କାନାଳ' ଗତ ୨୭ ବର୍ଷ ହେଲା ସଫଳତାର ସହିତ ଉଚ୍ଚାଙ୍ଗ ନାଟ୍ୟମଞ୍ଚନ କରି ବହୁ ରାଜ୍ୟ ଓ ଜାତୀୟ ସମ୍ମାନର ଅଧିକାରୀ ହେବାର ଗୌରବ ଅର୍ଜନ କରିଅଛି ।

ଏଇ ସଙ୍କଳନରେ ସନ୍ନିବିଷ୍ଟ ନାଟକ ଗୁଡିକ ହାସ୍ୟ ବିରାମଯୁକ୍ତ ସିରିଓ କମିକ୍ ଶ୍ରେଣୀର ଓ ଉଭୟ ପଠନ ଓ ମଞ୍ଚ ଉପଯୋଗୀ ।

ପ୍ରକାଶିକା

ted Printed at : Chandra Sekhar Press, Dkl, Ph. : 224781